# ଅମର ଚରିତ



ଯଯାତି କେଶରୀ

## ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ଲିଃ

# ଯଯାତି କେଶରୀ

ଲେଖକ—

ଶ୍ରୀ ଭଗବାନ ପତି

ଦ୍ୱିତୀୟ ସଂସ୍କରଣ

ପ୍ରକାଶକ—

ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ୍ ଲି:

ବ୍ରହ୍ମପୁର : କଟକ : ସମ୍ବଲପୁର

୧୯୫୫

[redacted]

# ସୂଚୀପତ୍ର





# ଯଯାତି କେଶରୀ

## —ଯାଆଁଳା ଭାଇ ଭଉଣୀ—

ପୂର୍ବେ ଗଙ୍ଗାଠାରୁ ଗୋଦାବରୀ ବ୍ୟାପି କଳିଙ୍ଗ ନାମରେ ଗୋଟିଏ ରାଜ୍ୟ ଥିଲା । ରାଜ୍ୟଟି ଖୁବ୍ ବଡ଼ ହୋଇଥିବାରୁ ତାହାର ଉତ୍ତର ଭାଗକୁ ଉତ୍ତର କଳିଙ୍ଗ, ଦକ୍ଷିଣ ଭାଗକୁ ଦକ୍ଷିଣ କଳିଙ୍ଗ ଓ ମଧ୍ୟଭାଗକୁ ମଧ୍ୟ କଳିଙ୍ଗ କୁହାଯାଉଥିଲା । ଏହି ଉତ୍ତର କଳିଙ୍ଗର ଅନ୍ୟ ନାମ ଥିଲା ଉତ୍କଳ । ଏହାର ଉତ୍ତର ଓ ପଶ୍ଚିମକୁ ଲାଗି ମହାକୋଶଳ ବୋଲି ଆଉ ଏକ ବଡ଼ ରାଜ୍ୟଥିଲା । କଳିଙ୍ଗ ପରି ଏ ରାଜ୍ୟର ଉତ୍ତର ଭାଗକୁ ଉତ୍ତର କୋଶଳ ଏବଂ ଦକ୍ଷିଣ ଭାଗକୁ ଦକ୍ଷିଣ କୋଶଳ କୁହା ଯାଉଥିଲା ।

ଆଜକୁ ପ୍ରାୟ ଦେଢ଼ ହଜାର ବର୍ଷତଳେ ଏହି ଦକ୍ଷିଣ କୋଶଳରେ ସୋମବଂଶୀ ରାଜାମାନେ ରାଜପଣ କରୁଥିଲେ । ଅନେକ ଦିନ ତଳେ ଏହି ବଂଶରେ ଧର୍ମରଥ ନାମରେ ଜଣେ ରାଜା ଥିଲେ । ତାଙ୍କର ସନ୍ତାନସନ୍ତତି କେହି ନ ଥିବାରୁ ତାଙ୍କ ଅନ୍ତେ ରାଜ୍ୟର କିଏ ଉତ୍ତରାଧିକାରୀ ହେବ, ସେଥିପାଇଁ ଜ୍ଞାତି ସାମନ୍ତମାନଙ୍କ ଭିତରେ ଖୁବ୍ ବାଦବିଚ୍ଛେଦ ଚାଲିଥାଏ ।

ରାଜା ଧର୍ମରଥଙ୍କର ଆଉଜଣେ ଭାଇଥିଲେ । ତାଙ୍କ ନାମ ବିଚିତ୍ରବୀର୍ଯ୍ୟ । ଅଭିମନ୍ୟୁ ଏହି ବିଚିତ୍ରବୀର୍ଯ୍ୟଙ୍କ ପୁଅ । ସେ ଟିକୋଟି ରାଣୀ ବାଭ ହୋଇଥିଲେ । ସବା ସାନରାଣୀ ବକୁଳାଙ୍କ ଗର୍ଭରୁ

ଯଯାତି ଅଉ ବିମଳା ନାମରେ ଦଉଟି ଯାଆଁଳା ଭାଇ ଭଉଣୀ ଜନମ ହୋଇଥିଲେ । ଅନ୍ୟ ଦୁଇ ରାଣୀଙ୍କର ଦୁଇଟି ପୁଅ ଥିଲେ କଅଣ ହେବ, ଏହି ଯାଆଁଳା ଭାଇ ଭଉଣୀ ଦୁହେଁ ବାପମାଆଙ୍କର କୋଡ଼ପୋଛା ପିଲା ହୋଇଥିବାରୁ ବୁଢ଼ା ରାଜା ଧର୍ମରଥ, ଅଉ ପିତା ଅଭିମନ୍ୟୁ ସେମାନଙ୍କୁ ଭାରିସ୍ନେହ କରୁଥିଲେ ।

ସେ ଭାଇ ଭଉଣୀ ଦଉଟି ବି ପିଲାବେଳେ ଭାରି ନଜରୁଆ ହୋଇଥାନ୍ତି । ସେମାନଙ୍କ ଦେହର ଗଠନ ଓ ରୂପଶୋଭାରୁ ସତେ ଯେମିତି ଲାବଣ୍ୟ ଝରି ପଡ଼ୁଥାଏ । ଗୋଟିଏ ଡେମ୍ଫରେ ଦୁଇଟି ଫୁଲ ପରି ସେ ଦୁହିଁଙ୍କର ରୂପଗୁଣ । ନଖନାସିକା ଓ ଚାଲିଚଳଣି ସବୁ ଏକାରକମର । ଏକାରୂପ ସାଙ୍ଗକୁ ଦୁହିଙ୍କର ପୁଣି ଏକାରକମର ବେଶଭୂଷା । ଦୈବାତ୍ ଆଖି ଆଗରେ ପଡ଼ିଲେ, କିଏ ଭାଇ ଅଉ କିଏ ଭଉଣୀ ସହଜେ ଚିହ୍ନି ହୁଏ ନାହିଁ ।

ରାଜା ଧର୍ମରଥ ଏ ଭାଇଭଉଣୀ ଦୁହିଁଙ୍କୁ ଏତେ ସୁଖ ପାଉଥାନ୍ତି ଯେ, ଦଣ୍ଡକ ପାଇଁ ସେମାନେ ଆଖି ଆଗରୁ କୁଆଡ଼େ ଗଲେ ତାଙ୍କୁ ଯୁଗକ ପରି ଲାଗେ । ରାଜାଘର, କେଉଁ କଥାରେ ଅବା ଅଭାବ ଅଛି ? ଏକାରୂପ ଓ ବେଶଭୂଷା ସାଙ୍ଗକୁ ସେ ଦୁହିଙ୍କୁ ପିଲାଦିନୁ ଏକାରକମର ଶିକ୍ଷାଦୀକ୍ଷା ମଧ୍ୟ ଦିଆଗଲା । ବିମଳା ଝିଅଟିଏ ହେଲେ କଅଣହେବ, ଭାଇ ଯଯାତି ସହିତ ଏକା ଗୁରୁଙ୍କ ପାଖରୁ ଅସ୍ତ୍ରବିଦ୍ୟା ବି ଶିଖିଲା । ଚାହୁଁ ଚାହୁଁ ଅତି ଅଳ୍ପ ବୟସରେ ସେ ଦୁହେଁ ନାନା-ରକମର ପାଠଶାଠ ଓ ଅସ୍ତ୍ରଶସ୍ତ୍ର ଚାଳନାରେ ଧୂରନ୍ଧର ହୋଇ ଉଠିଲେ ।

କିନ୍ତୁ ସବୁ ଦିନତ ସମାନ ଯାଏ ନାହିଁ; ପକ୍ଷେ ଆଲୁଅ ହେଲେ ପକ୍ଷେ ଅନ୍ଧାର ହୁଏ । ରାଜା ଧର୍ମରଥଙ୍କ ଜୀବନ ଭିତରେ

ଠିକ୍ ତାହାହିଁ ଘଟିଲା । ସାନରାଣୀ ବିରଜା ଦେବୀ ଏଭଳି ହୂପଗୁଣରେ ପୁଅଝିଅ ଦୁହିଁଙ୍କୁ ଛେଉଣ୍ଡ କରିଦେଇ ଅତି ଅକାଳରେ ଆଖି ବୁଜିଲେ । ପିଲା ଦୁହିଁଙ୍କର ଭବିଷ୍ୟତ କଥା ଭାବି ସବୁରି ଆଖିରୁ ଲୁହ ଝରିଲା । ରାଜା ଧର୍ମରଥ କେତେ ଆଶାକରି ଭାବିଥିଲେ ଯେ, ତାଙ୍କ ଅନ୍ତେ ଏହି ସାନ ନାତି ଯଯାତି ସିଂହାସନରେ ବସିବ ଏବଂ ସୋମବଂଶର ନାଁ ପାଣି ରଖିବ । ଏବେ ସେ ଅତି ପିଲା ବୟସରୁ ମା'ଛେଉଣ୍ଡ ହେଲା । ତା ଭବିଷ୍ୟତ କଥା ଚିନ୍ତାକରି ତାଙ୍କୁ ଅନ୍ନଜଳ ରୁଚିଲା ନାହିଁ ।

ସଚରାଚର ଦେଖାଯାଏ, ବିପଦ ଯେତେବେଳେ ଆସେ, ସେତେବେଳେ ଏକୁଟିଆ ହୋଇ ନ ଆସି ଗହଣରେ ତା ସାଙ୍ଗ ସାଥୀମାନଙ୍କୁ ନେଇ ଆସେ । ତେଣୁ ଗୋଟାଏ ବିପଦ ଶେଷ ନ ହେଉଣୁ ମଣିଷକୁ ଆଉ ଗୋଟାଏ ବିପଦର ସମ୍ମୁଖୀନ ହେବାକୁ ପଡ଼େ । ରାଜା ଧର୍ମରଥଙ୍କ ଭାଗ୍ୟରେ ଠିକ ତାହାହିଁ ଘଟିଲା । ପୁତ୍ରବଧୂ ବିରଜା ଦେବୀ ଆଖି ବୁଜିବାର ମାସ ଦୁଇଟା ଯାଇଛି କି ନାହିଁ, ବାହାରର ଶତ୍ରୁମାନେ ତାଙ୍କ ରାଜ୍ୟ ଉପରେ ଆକ୍ରମଣ ଆରମ୍ଭ କରିଦେଲେ ।

ବୁଢ଼ାହେଲେ କଣହେବ, ଯେତେ ହେଲେ ବି କ୍ଷତ୍ରିୟ ସନ୍ତାନ । ଶତ୍ରୁକୁ ଆଗରେ ଦେଖି ପଛଘୁଞ୍ଚା ଦେବା ତାଙ୍କ ଧାତକରେ ନାହିଁ । ସାଙ୍ଗରେ ସୈନ୍ୟ ସାମନ୍ତ ନେଇ ରାଜା ଧର୍ମରଥ ଯୁଦ୍ଧକ୍ଷେତ୍ରକୁ ଧାଇଁଲେ । ଯଯାତିର ପିତା ଅଭିମନ୍ୟୁ ମଧ୍ୟ ସେନାପତି ହୋଇ ସୈନ୍ୟ ପରିଚାଳନା କଲେ । ଏଣେ ଉଆସ ଭିତରେ କେଉଁଠି କଅଣ ହେଉଛି, ସେ କଥା ବୁଝିବାକୁ ସେମାନଙ୍କୁ ବେଳ କାହିଁ ? ମା'ଛେଉଣ୍ଡ ଯଯାତି ଆଉ ବିମଳା ଦୁହେଁ ଉଆସରେ ଏକୁଟିଆ ହୋଇ ରହିଲେ ।

ଅଗତ୍ୟ କୁହାଯାଉଛି, ଅଭିମନ୍ୟୁଙ୍କର ଜନନୀ ରାଣୀ । ଉଆସରେ ରାଜା ଧର୍ମରଥ ଓ ସ୍ୱାମୀ ଅଭିମନ୍ୟୁଙ୍କ ଅନୁପସ୍ଥିତିରେ ସାବତ ରାଣୀମାଅ ଦୁହେଁ ଯଯାତି ଅଉ ବିମଳା ଉପରେ ଦାଉ ସାଧିବାକୁ ବର୍ତ୍ତମାନ ସୁବିଧା ପାଇଲେ । ବୁଢ଼ାରାଜା ସେ ଭାଇଭଉଣୀ ଦୁହିଁଙ୍କୁ ଭାରି ସୁଖ ପାଉଥିବା ଦେଖି ସେମାନେ ଆଦୌ ସହିପାରୁ ନ ଥିଲେ । ସେଥିରେ ପୁଣି ଯେଉଁ ଦିନଠୁଁ ଜଣାପଡ଼ିଲାଣି ଯେ, ଯଯାତି ବୁଢ଼ା-ରାଜାଙ୍କ ଅନ୍ତେ ସିଂହାସନର ଉତ୍ତରାଧିକାରୀ ହେବ, ସେହିଦିନଠୁଁ ତା ଉପରେ ସେମାନଙ୍କ କୋପଦୃଷ୍ଟି ପଡ଼ୁଥାଏ । ଈଶ୍ୱର ସେମାନଙ୍କ କୋଳରେ ମଧ୍ୟ ଗୋଟିଏ ଗୋଟିଏ ପୁଅସନ୍ତାନ ଦେଇଛନ୍ତି । ମାଅ ହୋଇ ନିଜ ନିଜ ପିଲାର ସୁଖଶାନ୍ତି ନ ଦେଖି ସେମାନେ ସତୀଉଣୀ ପିଲାଙ୍କର ସୁଖଶାନ୍ତି ଦେଖିବେ କାହିଁକି ?

ସାବତ ରାଣୀମାଅ ଦୁହେଁ ଦେଖିଲେ, ଅଗତ୍ୟା ଯଦି ଏଥିପାଇଁ ବାଟ ସଫା କରାନଯାଏ, ତେବେ ଯଯାତି ସବା ସାନନାତି ହୋଇ ସୁଦ୍ଧା ଦିନେ ସିଂହାସନର ମାଲିକ ହୋଇ ବସିବ । ତେଣୁ ବେଳ ଥାଉଁ ଥାଉଁ ସେମାନେ ସେ ଭାଇଭଉଣୀ ଦୁହିଁଙ୍କ ପଛରେ ଲାଗିଲେ ।

## —ଉଆସରୁ ପଳାୟନ—

ପ୍ରଥମେ ଉଆସ ଭିତରେ ମା' ଛେଉଣ୍ଡ ଯଯାତି ଅଉ ବିମଳାର ଖବର ଅନ୍ତର କେହି ବୁଝିଲେ ନାହିଁ । ସାବତ ରାଣୀମାଅ ଦୁହିଁଙ୍କ ଶିଖାଣରେ ଉଆସର ଦାସୀ ପରିବାରୀମାନେ ମଧ୍ୟ ସେମାନଙ୍କ ପ୍ରତି ଅବହେଳା ଦେଖାଇଲେ । ଏମିତି ସବୁ କଥାରେ ଅସୁବିଧା ହେଉ ଶେଷରେ ସାବତ ମାଅମାନଙ୍କ ମତଲବ ସେମାନେ ବୁଝିପାରିଲେ । ଯଯାତି ବିମଳାଠାରୁ ଦଣ୍ଡେ କି ଘଡ଼ିଏ ବଡ଼ ସତ; କିନ୍ତୁ ଚତୁର

ପଶିଆରେ କେହି ତାହାଙ୍କୁ ଚିହ୍ନି ନ ପାରନ୍ତି । ଯଦି କେହି ଚିହ୍ନିଯାଇ କହିଦିଅନ୍ତି, ତା'ହେଲେ ସେମାନେ କିଛି ରକ୍ଷା ପାଇପାରିବେ ନାହିଁ । ବାଦଶାହଙ୍କ ନିଷ୍ଠୁରତା ପରି ଭୟଙ୍କର କିଛି ନାହିଁ, ସେଥିପାଇଁ ଏମାନଙ୍କ ଜୀବନ ଉପରେ ମଧ୍ୟ ଆଘାତ ଆସିପାରେ । ତେଣୁ ଉଆସ ଭିତରୁ କୌଣସିମତେ ଖସି ପଳାଇ ଗଲେ ରକ୍ଷା ।

ଶେଷରେ ସେମାନେ ସେହି କଥାକଲେ । କାହାକୁ କିଛି ନ କହି ଧୀରେ ରାତିରେ ସେମାନେ ଉଆସରୁ ଗୋଡ଼ କାଢ଼ି ପଳାଇ ଆସିଲେ । କୁଆଡ଼େ ଯିବେ, କଅଣ କରିବେ, କିଛି ଠିକ୍ କରି ନ ଥାନ୍ତି । ସେତେବେଳେ ଏବକାଳ ପରି ଭଲ ବାଟଘାଟ ନଥାଏ । ଚାରିଆଡ଼େ ଘଞ୍ଚ ଜଙ୍ଗଲ ପୂରି ରହିଥାଏ । ତା ଭିତରେ ବାଘଭାଲୁଙ୍କ ଉପଦ୍ରବ ଯେମିତି, ଚୋର ଡକାଇତଙ୍କ ଜୁଲମ ବି ସେମିତି । ଉଆସରୁ ବାହାରି ନାକସିଧା କିଛିଦୂର ଆସିଲାପରେ କମଳା ପଚାରିଲା—ଭାଇ, କୁଆଡ଼େ କେଉଁ ବାଟେ ଏମିତି ଯିବା ?

ହସ ହସ ହୋଇ ଯଯାତି କହିଲା—ଡର ଯାଉଛୁ କି କମଳା ! ଆମେ ପରା କ୍ଷତ୍ରିୟ ସନ୍ତାନ । ହାତରେ ଧନୁଶର ଅଛି, ବାହୁରେ ବଳ ଅଛି, ଆଉ ଛାତିତଳେ ସାହସ ଅଛି । ବାଘଭାଲୁ କି ଚୋରଡକାଇତ ଯେ ଆମ ଆଗରେ ପଡ଼ିବ, ତାକୁ ଲଢ଼ିଦେବା । କେତେ ସାଧୁସନ୍ଥଙ୍କଠୁଁ ମୁଁ ଶୁଣିଛି, ଏଠାରୁ ପୂର୍ବମୁହାଁ ହୋଇ ବହୁତ ଦୂର ଗଲେ ଉତ୍କଳ ବୋଲି ଗୋଟିଏ ରାଜ୍ୟ ପଡ଼ିବ । ପୂର୍ବେ ସେଠାରେ ଆମରି ସୋମବଂଶୀ ପୁରୁଣା ରଜାମାନେ ରାଜପଣ କରୁ-ଥିଲେ । ବୈତରଣୀ ନାମରେ ଗୋଟିଏ ନଈ ସେହି ରାଜ୍ୟ ଭିତରେ ବହିଯାଇଛି । ତାରି କୂଳରେ କୁଆଡ଼େ ସେମାନଙ୍କ ରାଜଧାନୀ ଥିଲା । ସେଠାରେ ଆମକୁଳର ଇଷ୍ଟଦେବୀ ମା ବିରଜାଙ୍କ ମନ୍ଦିର ବି

ସେମାନେ ଝୋଲାଉଥିଲେ । ସେ କୁଅତେଢ଼ ଭାରି ପ୍ରତ୍ୟକ୍ଷ ଦେବତା । ତାଙ୍କର ପାଖରେ କୌଣସିମତେ ପହଞ୍ଚି ପାରିଲେ ଆମର ଭାଗ୍ୟ ଖୋଲିଯିବ ।

ଭାଗବତକାର କହିଛନ୍ତି—'ତୁ ଦୟା କଲେ ନରହରି, ପଙ୍ଗୁହିଁ ଲଙ୍ଘିପାରେ ଗିରି ।' ଜଙ୍ଗଲ ଭିତରେ ସାବତମାଆମାନେ ସିନା ଏ ପିଲା ଦୁହିଁଙ୍କର ମନ୍ଦ ପାଞ୍ଚିଲେ; କିନ୍ତୁ ବିଧାତା ସବୁବେଳେ ଏମାନଙ୍କର ସାହା । ତା'ର କୃପାବଳରେ ବାଟରେ କୌଣସି ଆପଦ ବିପଦ ସେମାନଙ୍କୁ ପଡ଼ିଲା ନାହିଁ । ସୁରୁଖୁରୁରେ ସେମାନେ ଯାଇ ବିରଜାଠାକୁରାଣୀଙ୍କ ମନ୍ଦିର ପାଖରେ ପହଞ୍ଚିଲେ । ସେଠାରେ ଦେଖିଲେ ନଈଟି କାହିଁ କେତେ ଦୂରରୁ, କେତେ ବଣଜଙ୍ଗଲ, ପାହାଡ଼ପର୍ବତ ଓ ଡୋଙ୍ଗାମାନ ଟପି କୁଳୁ କୁଳୁ ଗୀତଗାଇ ବହି ଆସୁଛି । ତା'ର କୂଳରେ ଗୋଟିଏ ନିଛାଟିଆ ଜାଗାରେ ମା ବିରଜାଙ୍କ ମନ୍ଦିର ।

ଭାଇଭଉଣୀ ଦୁହେଁ ମନ୍ଦିର ଭିତରେ ପଶି ମା ବିରଜାଙ୍କୁ ଦର୍ଶନ କଲେ । ସେମାନଙ୍କର ମନେହେଲା, ଠାକୁରାଣୀ ପଥରରେ ତିଆରି ସତ; କିନ୍ତୁ ଏମିତି ହସ ହସ, ଏମିତି ଜୀବନ୍ତ ଯେ, ଡାକିଲେ ସତେ ଯେମିତି ଜବାବ ଦେବେ । ନିଜକୁଳର ଇଷ୍ଟଦେବୀଙ୍କୁ ଆଖି ପୂରାଇ ଦେଖି ଭାଇଭଉଣୀ ଦୁହେଁ ନିଜନିଜର ମନକଥା ତାଙ୍କ ପାଖରେ ଜଣାଇଲେ । ତା ପରେ ଠିକ୍ କଲେ, ତାଙ୍କର ସେବା ପୂଜାରେ ରହି ସେହିଠାରେ ସେମାନେ ବେଳକାଳ କଟାଇବେ ।

ସକାଳୁ କୁଅ ଡା' କହିବା ଆଗରୁ ଭାଇଭଉଣୀ ଦୁହେଁ ଦେଉଳର ଜଗମୋହନରୁ ବାହାରି ନଈରେ ଗାଧୁଆପାଧୁଆ ସାରନ୍ତି । ଯଯାତି ଫୁଲତୋଳି ଆଣେ, ବିମଳା ଦେଉଳ ଦୁଆରେ ବସି ହାର

ଗୁଚନ୍ତି । ଏହା ପରେ ସେ ହାରଟିକୁ ଠାକୁରାଣୀଙ୍କ ଲାଗି କରାଇ ଦୁହେଁଯାକ ଭୂଇଁରେ ମୁଣ୍ଡ ଲଗାଇ ଓଳଗି ହୁଅନ୍ତି । ଏହା ପରେ ଫଳମୂଳ ଖୋଜାଖୋଜି ଆଣିବାକୁ ବଣକୁ ବାହାରନ୍ତି । ଏମିତି ସେମାନଙ୍କର ଦିନପରେ ଦିନ ବିତିଯାଉଥାଏ ।

## —ଲଳିତା ଯଯାତି ଭେଟ—

ଯେଉଁ ସମୟର କଥା କୁହାଯାଉଛି, ସେ ସମୟରେ ଭୌମ-ବଂଶର ରାଜାମାନେ ଉତ୍କଳରେ ରାଜପଣ କରୁଥାଆନ୍ତି । ବିରୂପାନଈ କୂଳରେ ଚୌଦ୍ୱାରଠାରେ ସେମାନଙ୍କର ରାଜଧାନୀ ଥାଏ । ନଈ କୂଳରୁ କିଛି ଦୂରରେ କପାଳେଶ୍ୱର ଦୁର୍ଗରେ ସେହି ବଂଶର ଶେଷ-ରାଜା ଶୁଭଙ୍କର ଦେବ ବାସ କରୁଥାନ୍ତି । ତାଙ୍କର ପୁଅ ନଥାଏ; ଦଣ୍ଡୀବୋଲି ଗୋଟିଏ ମାତ୍ର ଝିଅ । ରାଜାରାଣୀ ଅତି ଆଦରରେ ତାକୁ ଲଳିତା ବୋଲି ଡାକନ୍ତି ।

କି ରୂପ, କି ଗୁଣ, ସବୁଥିରେ ସେ ଝିଅଟି କୋଟିକରେ କୋଟିଏ । ତାକୁରୁ ତଳପାପାଏ ସାରା ଦେହରୁ ତାର ସତେ ଯେମିତି ଲାବଣ୍ୟ ଝୋପି ପଡୁଥାଏ । ରାଜାଙ୍କ ଅନ୍ତେ ସେହି ଝିଅଟି ଉତ୍କଳ ରାଜସିଂହାସନର ଉତ୍ତରାଧିକାରିଣୀ ହେବ । ସେଥିପାଇଁ ରାଜା ଶୁଭଙ୍କର ତାକୁ ପିଲାଦିନୁ ସବୁରକମ ପାଠଶାଠ ପଢ଼ାଇ ଓ ଅସ୍ତ୍ରଶସ୍ତ୍ର ଚାଳନା ଶିଖାଇ ସବୁ ବିଷୟରେ ଧୁରନ୍ଧର କରାଇଥାନ୍ତି । ତାଙ୍କ ଆଖିରେ ସେହି ତାଙ୍କର ଝିଅ, ସେହି ତାଙ୍କର ପୁଅ ।

ଦିନକର ଲଳିତା ଗହଣରେ କେତେ ଗୁଡ଼ାଏ ସହଚରୀଙ୍କୁ ଘେନି ପାରିଧି କରିବାପାଇଁ ବଣକୁ ଯାଇଥାଏ । ସମସ୍ତେ ହାତରେ ଧନୁଶର ଧରି ଏବଂ ଅଣ୍ଟାରେ ତରବାରି ଝୁଲାଇ ଘୋଡ଼ା ପିଠିରେ

ଚଢ଼ିଥାନ୍ତି । ଅମଡ଼ା ବାଟରେ ବଣରେ ଏଣେତେଣେ ବୁଲିବୁଲି ବାଇଦ ଲୋକଙ୍କୁ ବୈତରଣୀକୂଳ ଜଙ୍ଗଲରେ ଯାଇ ସେମାନେ ପହଞ୍ଚିଲେ । ଅଳ୍ପ କିଛିଦୂର ଗଲାପରେ ନଈକୂଳରେ ଗୋଟିଏ ଦେଉଳ ଉପରେ ସେମାନଙ୍କ ନଜର ପଡ଼ିଲା । ଘୋଡ଼ାମାନଙ୍କୁ ଗଛରେ ବାନ୍ଧି ଦେଇ ସମସ୍ତେ ଠାକୁରାଣୀଙ୍କୁ ଦର୍ଶନ କରିବା ପାଇଁ ଦେଉଳ ଭିତରେ ପଶିଲେ ।

ବିମଳା ସେ ଦିନ ବଣକୁ ପାଚିଆ ଭରିବାକୁ ବାହାରି ଏକୁଟିଆ ବହୁତ ଦୂରକୁ ଚାଲିଯାଇଥାଏ ଏବଂ ସେପର୍ଯ୍ୟନ୍ତ ଫେରି-ନଥାଏ । ଯଯାତି ଦେଉଳ ଭିତରେ ଏକୁଟିଆ ହୋଇ ବସି ଠାକୁରାଣୀଙ୍କ ପାଇଁ ଫୁଲ ଗୁନ୍ଥୁଥାଏ । ଏହି ସମୟରେ ବାହାରୁ ଦଳେ ନାରୀଙ୍କୁ ଶିକାରୀ ବେଶରେ ଭିତରକୁ ଆସୁଥିବାର ଦେଖି ସେ ଚମକି ପଡ଼ିଲା । ଭାବିଲା, ସେମାନେ ଦେବୀ ନା ମାନବୀ ? ଆଖି ପୂରାଇ ଭଲକରି ସେମାନଙ୍କ ରୂପଶୋଭାକୁ ଦେଖିବା ପାଇଁ ସେ ଦେଉଳର ଗୋଟିଏ ଅନ୍ଧାରୁଆ ଯାଗାରେ ଲୁଚି ଗଲା ।

ସଖୀମାନଙ୍କ ଗହଣରେ ରାଜଜେମା ଲଳିତା ଦେଉଳ ଭିତରେ ପଶି ଠାକୁରାଣୀଙ୍କୁ ଦର୍ଶନ କଲା ଏବଂ କିଛି ସମୟ ଠିଆ ହୋଇ ନିଜର ମନକଥା ତାଙ୍କୁ ଜଣାଇଲା । ତା ପରେ ଧନୁଶର ତଳେ ଥୋଇ ଭୂଇଁରେ ମୁଣ୍ଡ ଲଗାଇ ସମସ୍ତେ ଠାକୁରାଣୀଙ୍କୁ ଓଳଗି ହେଲେ । ଯଯାତି ଦେଉଳ କଣରେ ଲୁଚି ରହି ସବୁ ଦେଖିଲା ଏବଂ ରାଜଜେମାର ରୂପଶୋଭାରେ ଏକାବେଳକେ ବାଉଳା ହୋଇଗଲା ।

## —ବଣମଝିରେ ବିମଳା ଲଳିତା ଭେଟ—

କେତେକ ସମୟ ପରେ ସହଚରୀମାନଙ୍କ ସହିତ ରାଜଜେମା ଲଳିତା ଦେଉଳରୁ ବାହୁଡ଼ିଲା । ବାହାରେ ବନ୍ଧା ହୋଇଥିବା ଘୋଡ଼ା ଉପରେ ଚଢ଼ି ପାରିଧି କରିବାପାଇଁ ସମସ୍ତେ ପୁଣି ବଣ ଭିତରେ ପଶିଲେ । ହଠାତ୍ ଗୋଟିଏ ହରିଣ ଜେମା ଆଗ ଦେଇ ଧାଇଁ ପଳାଇଲା । ତାକୁ ଧରିବାପାଇଁ ଜେମା ତା ପଛେ ପଛେ ଘୋଡ଼ା ଧପଟାଇ ଦେଲେ । ହରିଣ ତ ବଣ ଭିତରେ କୁଆଡ଼େ ପଳାଇଗଲା; କିନ୍ତୁ ଜେମା ତା ପଛେ ପଛେ ଛୁଟି ଗୋଟିଏ ଅପୂର୍ବ ଦୃଶ୍ୟ ଦେଖିଲେ ।

ଗହନ ବନସ୍ତ ଭିତରେ ଗୋଟିଏ ସୁନ୍ଦର ପୋଖରୀ । ତା କୂଳରେ ଗୋଟିଏ ବଙ୍କାଳିଆ ଗଛମୂଳେ ସୁନ୍ଦର ଯୁବକଟିଏ ଶୋଇଛି । ତାକୁ ଦେଖିଲାକ୍ଷଣି ଜେମାର ରୂପଗର୍ବ ନିମେଷକ ଭିତରେ କୁଆଡ଼େ ଖର୍ବ ହୋଇଗଲା । ଯୁବକଟି ନିଘୋଡ଼ ନିଦରେ ଶୋଇଛି । ତେଣୁ ଘୋଡ଼ାରୁ ଓହ୍ଲାଇ ଜେମା ଧୀରେ ଧୀରେ ତା ପାଖକୁ ଗଲେ ଏବଂ ପାଟିଶବ୍ଦ କିଛି ନ କରି ତା ରୂପଶୋଭାକୁ ନିରେଖି କରି ଦେଖିଲେ ।

ଠିକ୍ ଏତିକିବେଳେ ଘୋଡ଼ାର ନିଃଶ୍ୱାସ ଶବ୍ଦରେ ଯୁବକଟିର ନିଦ ଭାଙ୍ଗିଗଲା । ହଠାତ୍ ସେ ଉଠିପଡ଼ି ଦେଖିଲା, ଆଖିଆଗରେ ତାର ଗୋଟିଏ ଅପୂର୍ବ ସୁନ୍ଦରୀ ଯୁବତୀ । ହଠାତ୍ ଗୋଟିଏ ଅଜଣା ଅଶୁଣା ଯୁବକ ଆଗରେ ଧରା ପଡ଼ିଯାଇ ଜେମା ଲାଜରେ ଏକା-ବେଳକେ ସଢ଼ିଗଲା । ତା ଚଙ୍ଗଚାଙ୍ଗରୁ ସବୁକଥା ବୁଝିପାରି ସେ ଯୁବକଟି କହିଲା—"ଏତେ ଲାଜ କାହିଁକି ? ମୁଁ ବି ତୁମରି ପରି ଗୋଟିଏ ଯୁବତୀ । କୋଶଳ ରାଜବଂଶରେ ମୋର ଜନ୍ମ । ସାବତ ମାଆମାନଙ୍କ ବାଦରେ ଉଆସ ଛାଡ଼ି ନୀଳାଚଳ ଧାମ ପୁରୀ ଯାଉଥିଲି । ବାଟ ମଝିରେ ମା ବିରଜାଙ୍କ ପାଖରେ କେତେଦିନ ହେଲା ଅଟକି ଯାଇଛି ।"

ଏ ଯୁବକଟି ଯଯାତିଙ୍କ ଭଉଣୀ ବିମଳା ଛଡ଼ା ଆଉ କେହି ନୁହେଁ । ପୁରୁଷ ବେଶଧରି ବଣରେ ପାରିଧି କରିବାକୁ ଆସିଥିଲା । ତାଠାରୁ ଏଭଳି କଅଁଳ କଥା ଶୁଣି ଜେମାର ଲାଜସରମ ସବୁ କୁଆଡ଼େ ଉଭେଇ ଗଲା । ଆଉ ଠିଆ ହୋଇ ନ ରହି କ୍ରମେ ସେ ତା ପାଖରେ ବସିଲା ଏବଂ ନିଜର ସବୁ ପରିଚୟ ତାକୁ ଦେଲା । ବିମଳା ଯେତେବେଳେ ଜାଣିଲା ଯେ, ସେ ଉତ୍କଳର ରାଜଜେମା ଲଳିତା, ସେତେବେଳେ ଆନନ୍ଦରେ ନାଚି ଉଠିଲା ଏବଂ ସ୍ନେହରେ ତାକୁ କୁଣ୍ଢାଇ ପକାଇ ଅତି ଆପଣାର ବୋଲି ମନେକଲା ।

ଏତିକିବେଳେ ସହଚରୀମାନେ ବଣରେ ଜେମାକୁ ଖୋଜି-ଖୋଜି ସେଠାରେ ଆସି ପହଞ୍ଚିଲେ । କିନ୍ତୁ ଗୋଟିଏ ସୁନ୍ଦର ସୁଠାମ ଯୁବକ ପାଖରେ ଜେମାଙ୍କୁ ଦେଖି ସମସ୍ତେ ଚମକି ପଡ଼ିଲେ । ଜେମା ସେମାନଙ୍କ ମନକଥା ବୁଝିପାରି ସବୁ କଥା ଖୋଲି କହି-ଦେଲା ମାତ୍ରେ ସବୁ ସଂଶୟ ଘୁଞ୍ଚିଗଲା ଏବଂ ଗୋଟିଏ ଗୋଟିଏ ହୋଇ ସେମାନେ ସମସ୍ତେ ପାଖକୁ ଯାଇ ବିମଳାକୁ ଔଳଗି ହେଲେ । ବିମଳା ବି ବଣରୁ ଖୋଜିଲୋଡ଼ି ଆଣିଥିବା ଫଳମୂଳ ଖୁଆଇ ସେମାନଙ୍କୁ କେତେ ଆଦର ଅଭ୍ୟର୍ଥନା କଲା । ଏମିତି ଅଳ୍ପ ସମୟ ଭିତରେ ସେମାନଙ୍କ ଭିତରେ ବନ୍ଧୁତା ଖୁବ୍ ପ୍ରଗାଢ଼ ହୋଇ ଉଠିଲା ।

ପ୍ରଥମେ ବିମଳାର ଅପୂର୍ବ ରୂପଶୋଭା ଏବଂ ଯୁବକ ବେଶ ଦେଖି ରାଜଜେମା ଲଳିତାର ମନ କିଣି ହୋଇଯାଇଥିଲା । ଏବେ ତାର ମଧୁର ବ୍ୟବହାର ଏବଂ ଆଦର ଅଭ୍ୟର୍ଥନା ଦେଖି ସେ ଅଧିକ ମୁଗ୍ଧ ହେଲେ । ଶେଷରେ ତା ହାତଧରି ଜେମା କହିଲେ— "ଭଉଣି, ତୋତେ ସାଙ୍ଗରେ ନ ନେଇ ଏକୁଟିଆ ମୁଁ ଉଆସକୁ ଫେରିବି ନାହିଁ ।"

ବିମଳା ଦେଖିଲା, ରାଜକେମା ଲଳିତାର ଏ ଅନୁରୋଧକୁ ଏଡ଼ାଇବା ସହଜ କଥା ନୁହେଁ । ତାଙ୍କ ମଧୁର ବ୍ୟବହାରରେ ସେ ନିଜକୁ ତାଙ୍କ ହାତରେ ବିକିଦେଇ ସାରିଥିଲା । ତେଣୁ ତାଙ୍କ ସଙ୍ଗେ ଉଆସକୁ ଯିବାକୁ ରାଜି ନ ହୋଇ ରହିପାରିଲା ନାହିଁ । ଦୁହେଁ ଦୁଇ ଭଉଣୀ ପରି ଗୋଟିଏ ଘୋଡ଼ା ପିଠିରେ ଚଢ଼ି ଉଆସକୁ ବାହୁଡ଼ିଲେ । ବାଟରେ ଗୋଟିଏ ନିଭାଞ୍ଜିଆ ଜାଗାରେ ବିମଳା ତା ପୁରୁଷବେଶ ବଦଳାଇ ମାଇପି ବେଶ ପିନ୍ଧିଲା । ତା ପରେ ଦୁହେଁଯାକ ବାଟରେ କେତେ ହସକୌତୁକ, ରଙ୍ଗରସ କରିକରିକା କମେ ଅଗେଇଲେ ।

ଯଥା ସମୟରେ ସହଚରୀମାନଙ୍କ ଗହଣରେ ସେମାନେ ଯାଇ କପାଳେଶ୍ୱର ଦୁର୍ଗରେ ପହଞ୍ଚିଲେ । ରାଣୀ ଓ ଉଆସର ଦାସୀ ମୃଦୁସୁନ୍ଦରୀମାନେ କେମାଙ୍କ ସହିତ ବିମଳାକୁ ପାଛୋଟି ନେଲିଗଲେ । କେମା ଗୋଟି ଗୋଟି କରି ଉଆସର ସମସ୍ତଙ୍କ ପାଖରେ ବିମଳାର ପରିଚୟ ଦେଲେ । ରାଜାରାଣୀଙ୍କଠାରୁ ଆରମ୍ଭ କରି ଉଆସର ପୋଇଲୀ ପରିବାରୀ ପର୍ଯ୍ୟନ୍ତ ସମସ୍ତେ ତାକୁ ଅତି ଆପଣାର ବୋଲି ମନେ କଲେ ।

ବିମଳା ଦିଓଟି ଦିନ ଉଆସରେ ରହିଲା ସତ; କିନ୍ତୁ ଦିଓଟି ମୁହୂର୍ତ୍ତି ପରି ଘୂରୁଁ ଘୂରୁଁ ସେ ସମୟତକ କୁଆଡ଼େ ଗଡ଼ିଗଲା, କେହି ଜାଣି ପାରିଲେ ନାହିଁ । ଏକା ସାଙ୍ଗରେ ଖିଆପିଆ, ଏକା ସାଙ୍ଗରେ ଶୁଆବସା, ଓ ଖେଳକୌତୁକରେ କେମାଙ୍କ ସଙ୍ଗେ ତାର ପ୍ରୀତି ଛୀରନୀର ପରି ଜମିଉଠିଲା । ତୃତୀୟ ଦିନ ସକାଳେ ତାର ଫେରି ଆସିବାର କଥା । କେମା ଅଉ କିଛିଦିନ ରହିବାକୁ କାନ୍ଦକାନ୍ଦ ହୋଇ ତାକୁ ଅନୁରୋଧ କରିବାରୁ ସେ ଆଶ୍ୱାସନା ଦେଇ କହିଲା—"ଅଳ୍ପଦିନ ଭିତରେ ମୁଁ ପୁଣି ତୋ ପାଖକୁ ଫେରି ଆସିବି । ତୁ କିଛି ଦୁଃଖ କରନା, ତୋର ସ୍ନେହ ବଳେ ବଳେ ମୋତେ ଏଠାକୁ ପୁଣି ଟାଣିଆଣିବ ।"

ଏହାପରେ କ୍ଷେମା ବିମଳାକୁ ନୂଆ ରେଶମୀ ଶାଢ଼ୀଟିଏ ଓ ମଣିମୁକ୍ତାଖଞ୍ଜା ନୂଆ କାଞ୍ଚୁଲିଟିଏ ପିନ୍ଧାଇ ଦେଲା ଏବଂ ନିଜ ଗଳାରୁ ରତ୍ନହାରଟିଏ କାଢ଼ି ତା ଗଳାରେ ଲମ୍ବାଇ ଦେଲା । ହସ ହସ ମୁହଁରେ ସବୁର ପାଖରୁ ମେଲଣି ନେଇ ବିମଳା ଭିଅସ ଗ୍ରହଣ କଲା । ଆଖି ଆଗରୁ ସେ ଯେମିତି ଲୁଚିଗଲା, କ୍ଷେମାର ହସ ହସ ମୁହଁ ସେମିତି କୁଆଡ଼େ ଫିକା ପଡ଼ିଗଲା । ବଣ ଭିତରେ ଶିକାରୀ ଯୁବକ ବେଶରେ ସେ ପ୍ରଥମେ ତାର ଯେଉଁ ରୂପ ଦେଖିଥିଲା, ସେହିରୂପ ଶହ ଶହ ହୋଇ ତା ଆଖିଆଗରେ ଖାଲି ଭାସି ଉଠିଲା ।

## —ଭାଇ ଭଉଣୀଙ୍କ ଭେଟ—

ଏଣେ ବାରଙ୍କାଠାକୁରାଣୀଙ୍କ ମନ୍ଦିରରେ ଭାଇ ଯଯାତିର ଚିନ୍ତା କହିଲେ ନ ସରେ । ବିମଳା ଏକୁଟିଆ ପାରିଧିକି ଯାଇଥିଲା, ଗୃହବଧନ ହେଲା ନ ଫେରିବା ଫଳରେ ତା ମନକୁ କେତେ ଅଳ୍ପ କେତେ ପାପ ଛୁଉଁଥାଏ । ଭଉଣୀର ମଙ୍ଗଳ ମନାସି ଠାକୁରାଣୀଙ୍କ ପାଦତଳେ, ଗଳାରେ ଓ ଶୀରରେ ଫୁଲହାର ଲାଗି କରି ସେ ତା ମନକଥା ଜଣାଉଥାଏ । ଏତିକିବେଳେ ଠାକୁରାଣୀଙ୍କ ଗଭାରୁ ହଠାତ୍ ଫୁଲଟିଏ ଖସି ପଡ଼ିଲା । ଯଯାତି ତାକୁ ଶୁଭସଂକେତ ମନେ-କରି ଟିକିଏ ଆଶ୍ୱସ୍ତହେଲା । ଏହି ଘଟନାର ଅଳ୍ପ ସମୟ ପରେ ସୂର୍ଯ୍ୟ ପଶ୍ଚିମ ଆକାଶରେ କ୍ରମେ ତଳକୁ ଖସି ଖସି ଆସିଲେ । ବେଳ ରତ ରତ ହୋଇ ଆସିଲା ବେଳକୁ ଯଯାତି ଦେଉଳ ବାହାରକୁ ଆସି ଦେଖିଲା, ବିମଳା ତେଣୁ ହସ ହସ ମୁହଁରେ ଫେରି ଆସୁଛି । ତା ଆନନ୍ଦ ଆଉ ଦେଖେ କିଏ ?

ଭାଇ କିଛି ପଚାରିବା ଆଗରୁ ବିମଳା ତନ୍ନତନ୍ନ ଯାକର ସବୁ କଥା ଠିକେ ଠିକେ ତା ଆଗରେ ବଖାଣିଗଲା । ଜଙ୍ଗଲ ରାଜକ୍ଷେମା

ମେଲଣି ଦେଲବେଳେ ତାକୁ ଯେଉଁ ଶାଢ଼ୀ କାଞ୍ଚୁଲି ଓ ରତ୍ନହାର ଉପହାର ଦେଇଥିଲା, ସେଗୁଡ଼ିକୁ ମଧ୍ୟ ତାକୁ ଦେଖାଇଲା । ସବୁକଥା ଶୁଣି ଯଯାତି ବୁଝିଲା—ଚନ୍ଦନ ଚଳେ ସହଚରୀମାନଙ୍କ ଗହଣରେ ଯେଉଁ ସୁନ୍ଦରୀ ଶିକାରୀ ବେଶରେ ଦେଉଳକୁ ଆସିଥିଲେ, ଉତ୍କଳ ରାଜକନ୍ୟାଙ୍କ ଛଡ଼ା ସେ ଆଉ କେହି ନୁହେଁ ।

ଭାଇ ଭଉଣୀ ଦୁହେଁ ଏମିତି କଥାବାର୍ତ୍ତା ହେଉ ହେଉ ରାତି କ୍ରମେ ପହରକରୁ ବଳିଗଲା । ଠାକୁରାଣୀଙ୍କ ସେବା ପୂଜା ସରାଇ ସେ ଦୁହେଁ ସାଇତା ଫଳମୂଳ ଖାଇଲେ ଏବଂ ଦେଉଳ ଅଗଣାରେ ଶୋଇଲେ । ବାଟଚଲା ପରିଶ୍ରମରେ ଶୁଣୁ ଶୁଣୁ ବିମଳାକୁ ନିଘୋଡ଼ ନିଦ ଲାଗିଗଲା; ଯଯାତି ଆଖିରେ କିନ୍ତୁ ପଲକ ପଡ଼ିଲା ନାହିଁ । କେତେବେଳେ ନିଜ ଭାଗ୍ୟକଥା, ଆଉ କେତେବେଳେ ବା ରାଜକନ୍ୟା ଲଳିତାର ଅପୂର୍ବ ରୂପଶୋଭା କଥା ତା ଆଖି ଆଗରେ ଲହରୀମାଳା ଖେଳୁଥାନ୍ତି ।

ପୂର୍ବ ଆକାଶରେ ସିନ୍ଦୂର ଫାଟିବା ଆଗରୁ ଚଢ଼େଇଙ୍କ କେଁ କଚର ଶବ୍ଦରେ କାନ ଅତଡ଼ା ପଡ଼ିଲା । ଭାଇ ଭଉଣୀ ଦୁହେଁ ଶେଯ ଛାଡ଼ି ଉଠିଲେ । ଆଖି ମଳି ମଳିକା ବିମଳା କହିଲା—"ଭାଇ, ଏ କି ଆଶ୍ଚର୍ଯ୍ୟ ? ରାତିରେ ଏ କି ଅଦ୍ଭୁତ ସ୍ୱପ୍ନ ମୁଁ ଦେଖିଲି ?"

ତା ମୁହଁରୁ ଛଡ଼ାଇ ନେଲପରି ଯଯାତି କହିଲା—"କି ସ୍ୱପ୍ନ ଦେଖିଲୁ ? ମୁଁ ବି ଗୋଟାଏ ଅଦ୍ଭୁତ ସ୍ୱପ୍ନ ଦେଖିଛି । ତୋ ସ୍ୱପ୍ନ କଥା କଅଣ ଆଗ କହିଲୁ, ଶୁଣେ ।"

ଭୟ ଓ ଭକ୍ତିରେ ମା ବିରଜାଙ୍କୁ ଓଳଗି ହୋଇ ବିମଳା କହିଲା—"ଭାଇ, କାଲି ରାତିରେ ନିଜେ ମା ବିରଜା ମୋତେ

ଦେଖାଦେଇ କହିଲେ, ତୁମେ ଉତ୍କଳ ରାଜଜେମା ଲଳିତାଙ୍କୁ ବିବାହ କରିବ । ରାଜା ଶୁଭଙ୍କରଙ୍କର ପୁଅ ନାହାନ୍ତି । ତୁମେ ତାଙ୍କର ଜୋଇଁ ହୋଇ ତାଙ୍କ ଅନ୍ତେ ଉତ୍କଳର ରାଜା ହେବ । ଏ ଅଦ୍ଭୁତ ସ୍ୱପ୍ନ ସତେ ! ସତେ କଣ ଆମ ଭାଗ୍ୟ ଖୋଲିବ ?”

ବିସ୍ମୟରେ ଆଖି ଦୁଇଟିକୁ ବିସ୍ଫାରିତ କରି ଯଯାତି କହିଲା— “ବିମଳା, ମୁଁ ବି ଠିକ୍ ଏହି ସ୍ୱପ୍ନ କାଲି ରାତିରେ ଦେଖିଛି । ମା ବିରଜା ସ୍ୱପ୍ନରେ ଆହୁରି ଆଦେଶ କରିଛନ୍ତି, ରାଜଜେମା ଲଳିତା ମେଲଣି ଦେଲାବେଳେ ତୋତେ ଯେଉଁ ଶାଢ଼ୀ ଅଜ କାଞ୍ଚୁଲି ଏବଂ ରତ୍ନହାର ଦେଇଛି, ତାକୁ ପିନ୍ଧି ମୁଁ ଶୀଘ୍ର କପାଳେଶ୍ୱର ଦୁର୍ଗକୁ ଯିବି । ସେଠାରେ ରାଜଜେମା ସହିତ ମୋର ବିବାହ ହେବ । ସତେ କଣ ଏତେଦିନେ ଆମ ଉପରେ ମା ବିରଜାଙ୍କ କୃପାଦୃଷ୍ଟି ପଡ଼ିଛି !!”

ବିମଳା ପୁଣି କହିଲା—“ଭାଇ, ଏ ତ ସ୍ୱପ୍ନ ନୁହେଁ, ମା ବିରଜାଙ୍କ ଆଦେଶ । ଆଉ ବିଳମ୍ବ ନ କରି ତୁମେ କପାଳେଶ୍ୱର ଦୁର୍ଗକୁ ଯାଅ । ଏ ଶାଢ଼ୀ, ଏ କାଞ୍ଚୁଲି, ଏ ରତ୍ନହାର ସବୁ ତୁମେ ନିଅ । ଆମ ଦୁହିଁଙ୍କ ଚେହେରା ତ ଏକା ରକମର । ତେଣୁ ତୁମେ ମୋଠାରୁ ଅଲଗା ବୋଲି କେହି ଜାଣି ପାରିବେ ନାହିଁ ।”

ଯଯାତି ଯାହା ଖୋଜୁଥିଲା, ବିମଳା ସେହି କଥା କହିଲା । ସଙ୍ଗେ ସଙ୍ଗେ ସେ ବୈତରଣୀରେ ଗାଧୁଆଗାଧୁଆ ସାରି ମା ବିରଜାଙ୍କୁ ଓଳଗି ହେଲା ଏବଂ ସାଇତା ଫଳମୂଳରୁ କିଛି ସଙ୍ଗରେ ଧରି ଭଉଣୀର ବେଶପୋଷାକ ପିନ୍ଧି କପାଳେଶ୍ୱର ଦୁର୍ଗକୁ ବାହାରିଲା ।

## —କପାଳେଶ୍ୱର ଦୁର୍ଗରେ ଯଯାତି—

କପାଳେଶ୍ୱର ଦୁର୍ଗ ଅଳ୍ପ ଅଳ୍ପ ବାଟ ଥାଏ, ଗୋଟିଏ ନିର୍ଜ୍ଜନ ଜାଗା ଦେଖି ଯଯାତି ନିଜର ପୁରୁଷ ବେଶ ବଦଳାଇ ନାରୀ ବେଶ ପିନ୍ଧିଲେ । ଠିକ୍ ସନ୍ଧ୍ୟାବେଳକୁ ଦୁର୍ଗର ସିଂହଦ୍ୱାର ପାଖରେ ଯାଇ ପହଞ୍ଚିଲେ । ପ୍ରହରୀମାନେ ତାଙ୍କୁ କମଳା ବୋଲି କୌଣସି ବିନା ବାଧାରେ ବାଟ ଛାଡ଼ିଦେଲେ । ଅନ୍ତଃପୁରର ଦାସୀ ମୁକୁଳୀମାନେ ତାଙ୍କୁ ବାଟ କଢ଼ାଇ କେମାହଂସପୁରକୁ ଘେନିଗଲେ ।

ହାତୀଦାନ୍ତ ପଲଙ୍କ ଉପରେ ସମବୟସୀ ଦୁଇଟି ସଖୀପରି ଲଳିତା ଆଜ କମଳାବେଶୀ ଯଯାତି ବସି କେତେ ହସ କୌତୁକରେ ମାତିଲେ । କେମା କହିଲା—ଏତେ ସଅଳ ତୁମେ ପୁଣି ମୋ ପାଖକୁ ଫେରି ଆସିବ ବୋଲି ମୁଁ ଆଶା କରି ନଥିଲି, କମଳା !

କମଳା କହିଲା—ସ୍ନେହଶରଧାର ଯେଉଁ ଜାଲରେ ତୁମେ ମୋତେ ଛନ୍ଦି ପକାଇଛ, ତାକୁ ଛିଣ୍ଡାଇବା ମୋ ପକ୍ଷରେ ଏକାବେଳକେ ଅସମ୍ଭବ । ଏମିତି କେତେଅଡ଼ୁ କେତେ କଥାବାର୍ତ୍ତା ହେଉଁ ହେଉଁ ରାତି କ୍ରମେ ଅଧିକରୁ ଅଧିକ ହେଲା । ଅନ୍ତଃପୁରରେ ସନ୍ଧ୍ୟାମଣୋହି ପାଇଁ କାହାଳି ବାଜି ଉଠିଲା । କେମା ଓ କମଳା ଏକାଥାଳରେ ସାଙ୍ଗହୋଇ ବସି ଖାଇଲେ ।

ଝିଅପିଅ ସାରି ଯେ ଯୁଆଡ଼େ ସମସ୍ତେ ଶୋଇବାକୁ ଗଲେ । ଏତେ ବଡ଼ ଅନ୍ତଃପୁର କ୍ରମେ ନୀରବ ନିସ୍ତବ୍ଧ ହୋଇ ଆସିଲା । କେମା ଓ କମଳା ଏକା ପଲଙ୍କରେ ଶୋଇଥାନ୍ତି । କିନ୍ତୁ କାହାରି ଆଖିକୁ ନିଦ ଆସୁ ନ ଥାଏ । କେତେବେଳରେ କେମା କହିଲା—ଭଉଣି ! ତୁମେ ସେ ଦିନ ଗଲାପରେ ମୋ ଦେହଟା ସିନା ଅନ୍ତଃପୁରରେ ଥିଲା, ମନଟା କିନ୍ତୁ ତୁମ ପଛେ ପଛେ ଗୋଡ଼ାଇ ଯାଇଥିଲା ।

ଏ କଥା ଶୁଣି ବିମଳାଦେବୀ ଯଯାତି କହିଲେ—ସେ ଦିନ ସିନା ମେଲାଣି ନେଇ ମୁଁ ତୁମ ପାଖରୁ ଚାଲି; ବାଟରେ କେବଳ ତୁମ ରୂପଗୁଣ ଓ ମଧୁର ବ୍ୟବହାର କଥା ମନେ ପଡ଼ିଲା ଏବଂ ଗୋଡ଼ ଆଦୌ ଆଗକୁ ପଡ଼ିଲା ନାହିଁ । ମନେ ମନେ ଭାବିଲି, ନାରୀ ନ ହୋଇ ଯଦି ମୁଁ ପୁରୁଷ ହୋଇଥାନ୍ତି, କିମ୍ବା ତୁମେ ଯଦି ନାରୀ ନ ହୋଇ ପୁରୁଷ ହୋଇଥାଅନ୍ତ, ତେବେ ଆମେ ଦୁହେଁ ହାତ ଧରାଧରି ହୋଇ ଜୀବନସାରା କେଡ଼େ ସୁଖରେ କାଳ କଟାଇ ନଥାନ୍ତେ ?

କେମା ହସି ଉଠି କହିଲେ—ଦେଖୁଛି, ତୁମ ଦଉଡ଼ ତ କମ୍ ନୁହେଁ ଭଉଣି । ଯାହା ହୋଇ ନାହିଁ କିମ୍ବା ହୋଇ ପାରିବ ନାହିଁ, ସେହିଭଳି କଳ୍ପନାରେ ତୁମ ମୁଣ୍ଡ ତ ବେଶ୍ ଘୂରୁଛି ।।

ବିମଳା କହିଲେ—ଆମେ ଯେତେବେଳେ ଝିଅ ଜନମ ପାଇଛେ, ସେତେବେଳେ ନିଶ୍ଚୟ ଦିନେ ପରଘରକୁ ଯିବା । ସେତେବେଳେ ଆମେ ପରସ୍ପରଠାରୁ ଅଲଗା ହୋଇ ବାହିଁ କେତେ ଦୂରରେ ରହିବା ସିନା । ଅମର ଏ ସ୍ନେହ ଶରଧା ସେତେବେଳେ ସତେ କଣ ଏମିତି ରହିବ ? ଏହିପରି କେତେଅଡ଼ୁ କେତେ କଥା ଭାବି ଯାଉ ଯାଉ ବାଟମଝିରେ ହଠାତ୍ ଗୋଟିଏ ମୁନି ଆଶ୍ରମରେ ପହଞ୍ଚିଲି । ତୁମର ରୂପଗୁଣରେ ମୋ ମନ ସେତେବେଳେ ଭରପୂର ହୋଇ ରହିଥାଏ । ଠିକ୍ କଲି, ମୁନି ଧ୍ୟାନରୁ ଉଠିଲେ ତାଙ୍କୁ ନିଜର ମନକଥା ଜଣାଇବି ଏବଂ ପୁରୁଷ ପାଲଟିଯିବାର କୌଣସି ମନ୍ତ୍ର ଥିଲେ ତାଙ୍କଠାରୁ ଶିଖିବି ।

କେମା ହସି ଉଠି ପଚାରିଲେ—ବାଃ ! ତା ପରେ କଣ ହେଲା ?

ବିମଳା ପୁଣି କହି ଗୃଲିଲ୍ଲ—କେତେବେଳକେ ମୁନି ଧ୍ୟାନରୁ ଉଠି ମୋତେ ଅଧା ପଡ଼ିଥିବାର ଦେଖି କହିଲେ, 'ଉଠ ବତ୍ସ, ତୁମର ମାଗୁଣି କଅଣ କୁହ ।' ଭକ୍ତିରେ ଗଦ୍‌ଗଦ ହୋଇ ମୁଁ କହିଲି, ଆପଣଙ୍କ ଶ୍ରୀମୁଖ ଉକ୍ତି ସତ୍ୟହେଉ । ମୁଁ ଯିନା ପୁଅଙ୍କପରି ବେଶ ପୋଷାକ ପିନ୍ଧୁଛି; କିନ୍ତୁ ପ୍ରକୃତରେ ମୁଁ ଗୋଟିଏ ଝିଅ ।

ମୋର ଏ ଅଦ୍ଭୁତ ମାଗୁଣି କଥା ଶୁଣି ଘଣ୍ଟାଏ କାଳ ମୌନ ହୋଇ ରହିଲେ । ତା ପରେ କହିଲେ, ଆଗରେ ଏହି ପୋଖରୀରେ ମୁଣ୍ଡ ବୁଡ଼ାଇ ଗାଧୋଇ ଆସ, ତୁମର ମନକାମନା ପୂର୍ଣ୍ଣହେବ ।

ଲେମା ଏ ଅଦ୍ଭୁତ କଥା ଶୁଣି ଏକାବେଳକେ ଆଶ୍ଚର୍ଯ୍ୟ ହୋଇଗଲା । ଅତି ସମ୍ଭାଳି ହୋଇ ରହି ନ ପାରି ପଗ୍ଚରିଲା—ସତେ ନା ! ତା ପରେ କଣ ହେଲା ?

ବିମଳା କହିଲା—ଆଶ୍ଚର୍ଯ୍ୟର କଥା ଭଉଣି । ପୋଖରୀରେ ମୁଣ୍ଡ ବୁଡ଼ାଇ ଉଠିଲା ମାତ୍ରେ ଦେଖିଲି, ମୁନିଙ୍କ ଶ୍ରୀମୁଖବାକ୍ୟ ସତ୍ୟ ହୋଇଅଛି । ମୁଁ ଆଉ ନାରୀ ନୁହେଁ, ପୁରୁଷ । କିନ୍ତୁ କୂଳକୁ ଉଠି ଦେଖେ, ସେ ମୁନି ନାହାନ୍ତି, କି ସେ ଆଶ୍ରମ ମଧ୍ୟ ନାହିଁ । ସବୁ କୁଆଡ଼େ ଉଭେଇ ଯାଇଛି । ଏ ଅସମ୍ଭବ ଘଟଣାରେ ମୁଁ ଯେତିକି ବିସ୍ମିତ, ସେତିକି ଆନନ୍ଦିତ । ଆଉ ଆଗକୁ ନ ଯାଇ ତୁମକୁ ଏ ଖବର ଦେବାକୁ ସଙ୍ଗେ ସଙ୍ଗେ ସେହିଠାରୁ ଫେରି ଆସିଲି ।

ଲେମାର ଆନନ୍ଦ ଆଉ ଦେଖେ କିଏ ? ଜଙ୍ଗଲ ଭିତରେ ପହିଲି ଦେଖାବେଳେ ସେ ପୁରୁଷ ବେଶରେ ବିମଳାକୁ ଦେଖି ମୁଗ୍ଧ ହୋଇଥିଲା । ବର୍ତ୍ତମାନ ସେ ପୁରୁଷ ପାଲଟିଯିବାର ଶୁଣି ଆନନ୍ଦ ଓ ବିସ୍ମୟରେ ସେ ଏକାବେଳକେ ବୁଡ଼ିଗଲା । ସବୁଦିନ ପାଇଁ ଦୁହେଁ

ଦୁହିଁଙ୍କ ଜୀବନର ସାଥୀହୋଇ ରହିବାକୁ ଆଉ କୌଣସି ବାଧା ନାହିଁ । ଆଗରୁ ତ ଦୁହିଁଙ୍କ ମନ ଦୁହିଁଙ୍କ ଆଡ଼କୁ ଟଳିଥିଲା; ବର୍ତ୍ତମାନ ଆଉ ତାକୁ ଅଟକାଇବ କିଏ ?

ଯୁବକ ଯୁବତୀଙ୍କ ଭିତରେ ଆଗ କାଳରେ ପରସ୍ପର ମନ ଜଣାବଜାରେ ଏହିଭଳି ବିବାହ ଗନ୍ଧର୍ବମାନଙ୍କ ସମାଜରେ ଚଳୁଥିଲା । ସେଥିପାଇଁ ସେ ଧରଣର ବିବାହକୁ ଗାନ୍ଧର୍ବ ବିବାହ କୁହାଯାଉଥିଲା । ବର୍ତ୍ତମାନ ସେହି ବିବାହରୀତି ଅନୁସାରେ ପରସ୍ପର ବିବାହ ବନ୍ଧନରେ ବାନ୍ଧି ହେବାକୁ କାହାର କୌଣସି ଆପତ୍ତି ରହିଲା ନାହିଁ । ଜଅସର ସବୁରି ଅଜଣାରେ ସେ ଦୁହେଁ ସ୍ୱାମୀ ସ୍ତ୍ରୀ ରୂପେ ନୂଆ ଜୀବନ ଆରମ୍ଭ କଲେ ।

## —ଉତ୍କଳ ସିଂହାସନରେ ଯଯାତି—

ଗହନ ବନସ୍ତ ଭିତରେ ସବୁରି ଅଜଣାରେ ବଣର ମାଳତୀ କେଉଁଠି ଫୁଟେ । କିନ୍ତୁ ସୁବାସ ଯୋଗେ ତାହା ଅଧିକ ସମୟ ଲୋକ-ଲୋଚନରୁ ଲୁଚି ରହିପାରେ ନାହିଁ । ଠିକ୍ ସେମିତି ରାଜଜେମା ଲଳିତା ଓ ଯଯାତିଙ୍କର ଏ ଗୁପ୍ତ ବିବାହ ଅଧିକ ଦିନ ଲୁଚି ରହିପାରିଲା ନାହିଁ । ଦାସୀ ମୁହଁପୁଲିମାନଙ୍କ ତୁଣ୍ଡରେ ପ୍ରଥମେ ଜଅସର ନାରୀମହଲରେ ଏବଂ ପରେ ରାଜାରାଣୀଙ୍କ କାନରେ ତାହା ବାଜିଲା ।

ଜେମାର ଏ ଗୁପ୍ତବିବାହ ସଂବାଦ ପାଇଲା ମାତ୍ରେ ରାଜା ରାଗରେ ବାହା କାମୁଡ଼ି ପକାଇଲେ । ଜଣେ ନାରୀ ଯେ ହଠାତ୍ ଏଭଳି ପୁରୁଷ ପାଲଟି ଯାଇପାରେ, ଏହାକୁ ସେ ଆଦୌ ବିଶ୍ୱାସ କରି ପାରିଲେ ନାହିଁ । ଶେଷରେ ସ୍ଥିର କଲେ, ପୁରୁଷବେଶୀ ବିମଳାକୁ ଉପଯୁକ୍ତ ଶାସ୍ତି ନ ଦେଇ ଛାଡ଼ିବେ ନାହିଁ ।

କିନ୍ତୁ ଆଶ୍ଚର୍ଯ୍ୟର କଥା, ସେହିଦିନ ରାତିରେ ରାଜା ସ୍ୱପ୍ନରେ ଦେଖିଲେ, କେଶରୀ ବାହନରେ ମା ବିରଜା ତାଙ୍କ ଆଗରେ ଉଭାହୋଇ କହୁଛନ୍ତି, "ଶୁଣ ରାଜା, ଉଆସ ଭିତରେ ଯାହା ଘଟି ଯାଇଛି, ତାହା ବିଧାତାର ଇଚ୍ଛା । ରାଜଜେମା ଲଳିତା ସ୍ୱାମୀରୂପେ ଯାହାକୁ ବରଣ କରିଛି, ସେ ଇତର ଲୋକ ନୁହେଁ; କୋଶଳ ରାଜବଂଶରେ ତାର ଜନ୍ମ । ସେ ମଧ୍ୟ ମୋର ଜଣେ ପରମଭକ୍ତ । ତେଣୁ ମୁଁ ତାର ସହାୟ ଥିବାଯାଏ, ତୁମେ ତାର କୌଣସି ଅନିଷ୍ଟ କରିପାରିବ ନାହିଁ ।

ଏଭଳି ସ୍ୱପ୍ନ ଦେଖିବା ଫଳରେ ରାଜାଙ୍କର ରାଗଯାକ ଶାଗ ପରି କୁଆଡ଼େ ମଉଳିଗଲା । ଯେମା ଯାହା କରିଛି, ତାହା ମା ବିରଜାଙ୍କ ଇଚ୍ଛା ବୋଲି ସେ ଧରିନେଲେ । ସାମାନ୍ୟ ଜଣେ ମଣିଷ ହୋଇ ସେ ଇଚ୍ଛା ବିରୁଦ୍ଧରେ ସେ ବା କାହିଁକି ହାତ ଉଠାଇବେ ? ରାତି ପାହିବା ମାତ୍ରେ ବିବାହର ସମସ୍ତ ଆୟୋଜନ କରିବା ପାଇଁ ସେ ଆଦେଶ ଦେଲେ । ଉଆସ ଭିତରେ ଝିଅପିଅ ଓ ଦାଆନିଅରେ ଆନନ୍ଦର ଗୋଟାଏ ସୁଅ ଛୁଟିଲା । ସବୁଠାରୁ ଅଧିକ ସୁଖୀ ହେଲେ ଲଳିତା ଆଉ ବିମଳାବେଶୀ ଯଯାତି ।

ରାଜାଙ୍କର କୌଣସି ପୁତ୍ରସନ୍ତାନ ନ ଥିଲେ । ତେଣୁ ତାଙ୍କ ଅନ୍ତେ ରାଜଜେମା ଲଳିତା ରାଣୀ ହୋଇ ସିଂହାସନରେ ବସୁ, ଏହା ପ୍ରଜାପାଟଙ୍କ ସବୁରି ଇଚ୍ଛା । ବିବାହର ଅଳ୍ପ କେତେକ ମାସ ପରେ ରାଜା ଯେମିତି ଆଖି ବୁଜିଲେ, ଲଳିତା ସେମିତି ନିଜର କୁଳାଚାର ପ୍ରଥା ଅନୁସାରେ ଦଣ୍ଡୀମହାଦେବୀ ନାମ ଧାରଣ କରି ସିଂହାସନରେ ବସିଲେ । କିନ୍ତୁ ରାଜ୍ୟର ପ୍ରକୃତ ଶାସନ ଭାର ଯଯାତିଙ୍କ ହାତରେ ରହିଲା ।

ଏ ଅବସ୍ଥା ଜନ୍ମ ଅଧିକ ଦିନ ରହିଲା ନାହିଁ । ଲଳିତା ଆପଣା ସ୍ୱର୍ଣ୍ଣ ସିଂହାସନରୁ ଅପସରି ଯିବା ପାଇଁ ଇଚ୍ଛା ପ୍ରକାଶକଲେ । ପିଲାଦିନରୁ ଧର୍ମକର୍ମରେ ତାଙ୍କର ମତି । ତେଣୁ ରାଜ୍ୟଶାସନର ବୋଝ ବୋହିବାକୁ ତାଙ୍କୁ ସୁଖ ଲାଗିଲା ନାହିଁ । ରାଜ୍ୟର ମୁଖିଆ ମୁଖିଆ ପ୍ରଜା ଓ ସାମନ୍ତମାନେ ମଧ୍ୟ ଏଥିରେ ରାଜି ହୋଇଗଲେ ; ଫଳରେ ଯଯାତି ରାଜସିଂହାସନରେ ବସିବାର ସ୍ଥିରହେଲା ।

ଅଜକୁ ୧୩୬୦ ବର୍ଷ ତଳେ ଭାଦ୍ରମାସର ଶୁକ୍ଳପକ୍ଷ ଦ୍ୱାଦଶୀ ତିଥି । ସେହିଦିନ ଜଳ୍ଳଳର ରାଜସିଂହାସନରେ ଯଯାତିଙ୍କର ଅଭିଷେକ ହେଲା । ସେହିଦିନଠାରୁ ସେ ରାଜ୍ୟରେ ଗୋଟିଏ ନୂଆ ସାଲ ମଧ୍ୟ ଚଳାଇଲେ । ଏବେ ମଧ୍ୟ ସେହି ସାଲ ଆମ ଦେଶରେ ଚଳୁଛି । ତାହା ସୁନିଆଁ ନାମରେ ଲୋକଙ୍କ ନିକଟରେ ପରିଚିତ ।

ମା ବିରଜାଙ୍କ କୃପାରୁ ଯଯାତିଙ୍କର ଏଭଳି ଭାଗ୍ୟୋଦୟ ଘଟିବାରୁ ସେ ତାଙ୍କ ବାହନର ନାମ ଅନୁସାରେ ନିଜେ କେଶରୀ ଉପାଧି ଗ୍ରହଣ କଲେ । ତାଙ୍କ ଅନ୍ତେ ତାଙ୍କ ବଂଶଧରମାନେ ମଧ୍ୟ ଏହି ଉପାଧିରେ ଭୂଷିତ ହେଲେ । ଏହିରୂପେ ଯଯାତିଙ୍କ ପ୍ରତିଷ୍ଠିତ ରାଜବଂଶ କେଶରୀବଂଶ ନାମରେ ପରିଚିତ ହେଲା ।

## —ରାଜା ଯଯାତିଙ୍କ କୀର୍ତ୍ତି—

ସିଂହାସନରେ ବସିବା ପରେ ପରେ ରାଜା ଯଯାତି ବିରଜାଙ୍କ ଯାଜପୁରକୁ ନିଜର ରାଜଧାନୀ ଉଠାଇନେଲେ । ଏଥିପାଇଁ ବୈତରଣୀ କୂଳରେ ବଣଜଙ୍ଗଲ କଟାଇ ସେ ଗୋଟିଏ ନୂଆ ନଗର ବସାଇଲେ ଏବଂ ନିଜର ନାମ ଅନୁସାରେ ଯଯାତିନଗର ବୋଲି ତାର ନାମକରଣ କଲେ । ଭଉଣୀ କମଳା ଓ ଧର୍ମପତ୍ନି ଲଳିତାଙ୍କ ସଙ୍ଗେ ଏକାଠି ମିଳା ମିଶି ଏହି ନଗରରେ ସେ ଆନନ୍ଦରେ ରହିଲେ ।

କେତେକ ସମୟ ପରେ ମା ବିରଜାଙ୍କ ବିଜେସ୍ଥଳୀର ଅନ୍ୟାନ୍ୟ ଜନ୍ଦିର ଦିଗରେ ସେ ମନଧ୍ୟାନ ଦେଲେ । ପୁରୁଣା ଦେଉଳଟି ଜୀର୍ଣ୍ଣଶୀର୍ଣ୍ଣ ହୋଇ ଯାଇଥିବାରୁ ତା ଯାଗାରେ ସେ ଗୋଟିଏ ନୂଆ ଦେଉଳ ତୋଳାଇଲେ ଏବଂ ବିରଜାଙ୍କ ସେବାପୂଜାପାଇଁ ପ୍ରଚୁର ବୃତ୍ତିବାଡ଼ ଖଞ୍ଜିଦେଲେ । ଏହାପରେ ସେଠାରେ ଅଶ୍ୱମେଧ ଯାଗଟିଏ କରିବାକୁ ତାଙ୍କର ମନ ବଳିଲା, କିନ୍ତୁ ସେତେବେଳେ ଏ ଦେଶରେ ବେଦବିଦ୍ୟାରେ ଧୂରନ୍ଧର ବ୍ରାହ୍ମଣଙ୍କର ବଡ଼ ଅଭାବ ଥିଲା । ଉତ୍ତର ଭାରତର କାନ୍ୟକୁବ୍‌ଜରୁ ସେ ଦଶହଜାର ବେଦଜ୍ଞ-ବ୍ରାହ୍ମଣ ଅଣାଇଲେ ଏବଂ ବୈତରଣୀ କୂଳରେ ମା ବିରଜାଙ୍କ ପୀଠସ୍ଥଳୀରେ ଯଜ୍ଞ ଆରମ୍ଭ କଲେ । ଯଜ୍ଞ ଶେଷରେ ସେହି ନିମନ୍ତ୍ରିତ ବ୍ରାହ୍ମଣ ମାନଙ୍କୁ ଯଯାତି ଆଉ ନିଜ ଦେଶକୁ ବାହୁଡ଼ାଇ ନ ଦେଇ ସେଠାରେ ରଖାଇଲେ ଏବଂ ସେମାନଙ୍କୁ ଭୂମି ଦାନ କରି ଆଖପାଖ ଅଞ୍ଚଳରେ ନୂଆ ନୂଆ ବ୍ରାହ୍ମଣଶାସନମାନ ବସାଇଲେ । ଯଜ୍ଞରେ ବ୍ରାହ୍ମଣମାନେ ଯେ ଯେଉଁ କାମ କରିଥିଲେ ଓ ଯେ ଯେଉଁ ଯୋଗ୍ୟତା ଦେଖାଇ-ଥିଲେ, ତାକୁ ଅନାଇ ସେମାନଙ୍କୁ ନୂଆ ନୂଆ ଉପାଧି ମଧ୍ୟ ବିତରଣ କରାଗଲା । ଏବେ ଓଡ଼ିଶାରେ କର, ପତି, ମିଶ୍ର, ମହାପାତ୍ର, ଷଡ଼ଙ୍ଗୀ ଓ ଶତପଥୀ ପ୍ରଭୃତି ଭିନ୍ନ ଭିନ୍ନ ଉପାଧିର ଯେଉଁ ବ୍ରାହ୍ମଣମାନେ ଦେଖାଯାନ୍ତି, ସେମାନେ ସେହି କାନ୍ୟକୁବ୍‌ଜୀ ବ୍ରାହ୍ମଣମାନଙ୍କର ଉତ୍ତରବଂଶଧର ଅଟନ୍ତି ।

ବୈତରଣୀ କୂଳରେ ଏ ପର୍ଯ୍ୟନ୍ତ ଯଜ୍ଞକୁଣ୍ଡ ଓ ଯଜ୍ଞସ୍ତମ୍ଭମାନ ଥାଇ ରାଜା ଯଯାତିଙ୍କ ଅଶ୍ୱମେଧ ଯଜ୍ଞର ପରିଚୟ ଦେଉଅଛୁ । ଯଜ୍ଞ ହେଉଥିଲା ବେଳେ ବୈତରଣୀରେ ଯେଉଁ ନୂଆଘାଟ ପ୍ରତିଷ୍ଠା କରାଯାଇଥିଲା, ତାହା ଦଶାଶ୍ୱମେଧ ଘାଟ ନାମରେ ପରିଚିତ । ଏବେ ମଧ୍ୟ ଲୋକେ ବିଶ୍ୱାସ କରନ୍ତି ଯେ, ମା ବିରଜାଙ୍କ ଦର୍ଶନ

ସାରି ଏହି ଘାଟରେ ସ୍ନାନ କଲେ ଦଶଟି ଅଶ୍ୱମେଧ ଯଜ୍ଞର ପୁଣ୍ୟ ଲାଭ ହୁଏ ।

କୋଶଳର ସୋମବଂଶୀ ରାଜାମାନେ ଶୈବଥିଲେ । ଯଯାତି ସେହିବଂଶର ସନ୍ତାନ ଥିବାରୁ ତାଙ୍କ ରାଜତ୍ୱରେ ସେହି ଧର୍ମ ରାଜଧର୍ମ ରୂପେ ଗୃହଅଙ୍ଗେ ବ୍ୟାପିଯାଇଥିଲା । ଯଯାତି ମଧ୍ୟ ରାଜଧାନୀ ଯଯାତି ନଗରରେ ବହୁ ଶିବମନ୍ଦିର ତୋଳାଇ ସେବାପୂଜାର ଅୟୋଜନ କରିଥିଲେ । ରାଣୀ ଦଣ୍ଡୀମହାଦେବୀ କିନ୍ତୁ ପରମବୈଷ୍ଣବୀ ଥିଲେ ଏବଂ ବୈଷ୍ଣବ ଧର୍ମ ତାଙ୍କ ଭୌମବଂଶର ରାଜଧର୍ମ ଥିଲା । ତେଣୁ ରାଜା ଯଯାତି ରାଣୀଙ୍କମନ ଲାଗି ବୈଷ୍ଣବଧର୍ମ ପ୍ରତି ଆଦର ସମ୍ମାନ ଦେଖାଉଥିଲେ ।

ଯଯାତିଙ୍କ ରାଜତ୍ୱର ଶହ ଶହ ବର୍ଷ ଆଗରୁ ପୁରୀରେ ଜଗନ୍ନାଥଙ୍କ ସେବାପୂଜା ହେଉଥିଲା ଏବଂ ସାରା ଉତ୍କଳର ଲୋକେ ତାଙ୍କୁ ପ୍ରଧାନ ଦେବତା ରୂପେ ମାନୁଥିଲେ । କିନ୍ତୁ ଉତ୍ତର ପଶ୍ଚିମ ଆଡ଼ୁ ରକ୍ତବାହୁ ନାମରେ ଜଣେ ଯବନସେନାପତି ସମୁଦ୍ରବାଟେ ଆସି ପୁରୀ ଅଧିକାର କରିବାରୁ ତାଙ୍କ ସେବାପୂଜା ବନ୍ଦହୋଇ ଯାଇଥିଲା । ସେକାଳର ରାଜା ଶୋଭନଦେବ ଯୁଦ୍ଧରେ ହାରିଯାଇ ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ର ଠାକୁରମାନଙ୍କୁ ସଙ୍ଗରେ ନେଇ ଜଙ୍ଗଲକୁ ପଳାଇ ଯାଇଥିଲେ । ଏହା ଯଯାତିଙ୍କ ରାଜତ୍ୱର ଦେଢ଼ଶହ ବର୍ଷ ତଳର କଥା ।

ଯଯାତି ରାଜା ହେବାର କେତେକ ବର୍ଷ ପରେ ଏହି ଠାକୁର-ମାନଙ୍କ ସନ୍ଧାନରେ ଗୃହଅଡ଼କୁ ଦୂତ ପଠାଇଲେ ଏବଂ ସୋନପୁରର ଗୋପଳୀ ନାମକ ଗ୍ରାମରେ ଠାକୁରମାନେ ଭୂଇଁତଳେ ପୋତା ହୋଇ ରହିଥିବାର ଲୋକମୁଖରୁ ଶୁଣିଲେ । ରାଜତ୍ୱର ଏଗାର

ଅଙ୍କରେ ରାଜା ଯଯାତି ଠାକୁରମାନଙ୍କୁ ସେଠାରୁ ଉଦ୍ଧାର କରି ଆଣିବାପାଇଁ ବ୍ରାହ୍ମଣ-ପଣ୍ଡିତ ଓ ସାମନ୍ତ ରାଜାମାନଙ୍କ ସହ ସୋନପୁର ଗଲେ ।

ବ୍ରାହ୍ମଣ-ପଣ୍ଡିତମାନଙ୍କ ପରାମର୍ଶ କ୍ରମେ ତିନି ଠାକୁରଙ୍କର ପୁନରୁଦ୍ଧାର କରାଗଲା । କିନ୍ତୁ ଦେଢ଼ଶହ ବର୍ଷକାଳ ଭୂଇଁତଳେ ରହିବା ଫଳରେ ଠାକୁରମାନେ ଏକାବେଳକେ ଜୀର୍ଣ୍ଣ ହୋଇ-ଯାଇଥିଲେ । ନୂଆ ଦାରୁ ସଂଗ୍ରହ କରାଯାଇ ତିନିଠାକୁରଙ୍କର ନବକଳେବର କରାଗଲା ଏବଂ ସେମାନଙ୍କୁ ସ୍ଥାପନା କରିବାପାଇଁ ୩୮ ହାତ ଉଚ୍ଚତାର ନୂଆ ମନ୍ଦିର ମଧ୍ୟ ତୋଳାଗଲା । ରାଜଧାନୀ ଯଯାତିନଗରରୁ କାନ୍ୟକୁବ୍ଜୀ ବ୍ରାହ୍ମଣମାନଙ୍କୁ ଆଣାଇ ରାଜା ଯଯାତି ମନ୍ଦିରର ଆଖପାଖ ଅଞ୍ଚଳରେ ବ୍ରାହ୍ମଣ ଶାସନମାନ ମଧ୍ୟ ବସାଇଲେ ଏବଂ ଠାକୁରମାନଙ୍କ ଯାନିଯାତ୍ରା, ପର୍ବପର୍ବାଣି ଓ ଦୈନିକ ସେବାପୂଜାପାଇଁ ବହୁତ ଜମିବାଡ଼ି ଖଞ୍ଜିଦେଲେ । ଏହିକ୍ରମେ ପୁରୁଷୋତ୍ତମ କ୍ଷେତ୍ରରେ ଜଗନ୍ନାଥଙ୍କର ପୂର୍ବ ଗୌରବ ପୁଣି ଫେରି ଆସିଲା ।

ପୂର୍ବରୁ ଠାକୁରମାନଙ୍କ ସେବାପୂଜା ଓ ଭୋଗରାଗରେ ବିଶେଷ କିଛି ଆଡ଼ମ୍ବର ନ ଥିଲା । ରାଜା ଯଯାତି ଏ ଦିଗରେ ବିଶେଷ ମନଧ୍ୟାନ ଦେଇ ପ୍ରଥମେ ଅନ୍ନ-ମହାପ୍ରସାଦ ଖଞ୍ଜା କରିଥିଲେ । ତାଙ୍କର ଏହି ସବୁ କାର୍ଯ୍ୟକଳାପ ଓ ଧର୍ମାନୁଷ୍ଠାନ ଫଳରେ ରାଜ୍ୟର ଚାରିଆଡ଼େ ତାଙ୍କର ସୁନାମ ଖେଳିଗଲା । ଉତ୍କଳର ଦକ୍ଷିଣରେ ଥିବା କଳିଙ୍ଗ ଓ କୋଙ୍ଗଦର ରାଜକୁମାରୀ ଦୁହେଁ ଏହି ସୁନାମରେ ଟାଣି ହୋଇ ଆସି ତାଙ୍କୁ ପତିରୂପେ ବରଣ କଲେ । ସେଠା ରାଜା ଦୁହିଙ୍କର ପୁତ୍ରସନ୍ତାନ ନ ଥିବାରୁ ସେମାନଙ୍କ ଅନ୍ତେ ରାଜକୁମାରୀ

ଦୁହେଁ ସେ ଦୁଇ ସିଂହାସନର ଉତ୍ତରାଧିକାରିଣୀ ହେଲେ । ଏହା ଫଳରେ ବିନା ଯୁଦ୍ଧରେ କଳିଙ୍ଗ ଓ କୋଙ୍ଗଦ ରାଜ୍ୟ ଦୁଇଟି ଯଯାତିଙ୍କ ହାତକୁ ଆସିଲା ।

ଏହାପରେ ନିଜର ପୈତୃକ ରାଜ୍ୟ ଦକ୍ଷିଣକୋଶଳ ଉପରେ ଯଯାତିଙ୍କ ଦୃଷ୍ଟି ପଡ଼ିଲା । ସେତେବେଳକୁ ବୁଢ଼ାରାଜା ଧର୍ମରଥଙ୍କର ପରଲୋକ ହୋଇଯାଇଥାଏ ଏବଂ ଯଯାତିଙ୍କ ସାବତ ଭାଇ ନହୁଷ ରାଜା ହୋଇଥାନ୍ତି । ସେ ଅତି ଦୁର୍ବଳ ଥିବାରୁ ଯଯାତି ଅତି ସହଜରେ ତାଙ୍କୁ ଯୁଦ୍ଧରେ ପରାସ୍ତ କରି ଦକ୍ଷିଣକୋଶଳ ଅଧିକାର କଲେ । ଏହିରୂପେ ଅଳ୍ପ କେତୋଟିବର୍ଷ ଭିତରେ ଅଳ୍ପ ଯୁଦ୍ଧ ଓ ରକ୍ତପାତରେ ଯଯାତି ଉତ୍କଳର ସୀମାସରହଦ ବଢ଼ାଇଥିଲେ ।

## —ଶେଷ ଜୀବନ—

କୋଙ୍ଗଦ ରାଜକୁମାରୀ କୋଳାବତୀଙ୍କ ଗର୍ଭରୁ ଯଯାତିଙ୍କର ଯେଉଁ ପୁଅ ହୋଇଥିଲା, ତାଙ୍କ ନାମ ଉଦ୍ୟୋତ କେଶରୀ । ପିତାଙ୍କ ପରି ସେ ଯେମିତି ଧାର୍ମିକ, ସେମିତି ବୀର ଓ ସାହସୀ ଥିଲେ । କୋଶଳ ଯୁଦ୍ଧରେ ସୈନ୍ୟ ପରିଚାଳନା କରି ସେ ନିଜର ଅଦ୍ଭୁତ ବୀରତ୍ୱ ଓ ସାହସ ଦେଖାଇଥିଲେ । ତେଣୁ ଯଯାତି ଶେଷ ବୟସରେ ରାଜ୍ୟର ସବୁ ଦାୟିତ୍ୱ ତାଙ୍କ ହାତରେ ଦେଇ ନିଜେ ଧର୍ମଚିନ୍ତାରେ ବୁଡ଼ି ରହିଥିଲେ ।

ବୃଦ୍ଧ ବୟସରେ ଏକାମ୍ରକାନନ ଉପରେ ଯଯାତିଙ୍କର ଦୃଷ୍ଟି ପଡ଼ିଲା । ତାଙ୍କ ରାଜତ୍ୱର ଶହ ଶହ ବର୍ଷ ପୂର୍ବେ ଏହା ଉତ୍କଳର ପ୍ରାଚୀନ ରାଜଧାନୀ ଥିଲା । ସେକାଳର ରାଜାମାନେ ଜୈନ ଓ ବୌଦ୍ଧ ଥିବାରୁ ସେଠାରେ ନିଜ ନିଜ ଧର୍ମର ବହୁକୀର୍ତ୍ତି ରଖିପାଇଥିଲେ ।

ବର୍ତ୍ତମାନ ଯଯାତି ବର୍ତ୍ତୁବଲେ, ସେହ ଏକାମ୍ରକାନନରେ ସେ ଗୋଟିଏ ଶୈବକ୍ଷେତ୍ର ପ୍ରତିଷ୍ଠା କରିବେ ।

ଏହ ବଗ୍ଭର ସଙ୍ଗେ ସଙ୍ଗେ କାମ ଅରମ୍ଭ କରିବାକୁ ସେ ନିଷ୍ପତ୍ତି କଲେ । ଦେଶର ବଡ଼ ବଡ଼ ଶିଳ୍ପୀ ଓ କାରିଗରମାନେ ଖୋଜା ହୋଇ ଅସିଲେ । ସେମାନଙ୍କୁ ଅଦେଶ ଦିଆଗଲା, ଏକାମ୍ର-କାନନରେ ଏମିତ ଏକ ଶିବମନ୍ଦିର ନିର୍ମିତ ହେବ, ଯାହା ଉଚ୍ଚତାରେ ଆକାଶକୁ ଛୁଇଁବ ଏବଂ କାରୁକାମରେ ଦେଶବିଦେଶର ସବୁ ମନ୍ଦିରକୁ ବଳିଯିବ । ନିର୍ମାଣକାର୍ଯ୍ୟ ଶେଷ ହେଲେ ତା ଭିତରେ ଭୁବନେଶ୍ୱର ଶିବଙ୍କୁ ସ୍ଥାପନା କରାଯିବ ।

ଭଲ ତିଥିବାର ଦେଖି ଏକାମ୍ରକାନନରେ ମନ୍ଦିର ନିର୍ମାଣ କାମରେ ଶୁଭ ଦିଆଗଲା । ରାଜା ଯଯାତି ଗନ୍ତାଘରର ମୁଦାଦୁଆର ଫିଟାଇ ଦେଲେ । ପାଣି ସୁଅ ପରି ଟଙ୍କା ସୁନାର ସୁଅ ଛୁଟିଲା । ପଥର କଟା, ପଥର ବୁହା ଓ ମାଟିଖୋଳା କାମରେ ଶହ ଶହ ଲୋକ ଦିନ ରାତି ଲଗିଲେ । ମନମୁନ ଏକ କରି କାରିଗରମାନେ କଠିନ ପଥର ବୁକୁରେ ଜୀଅନ୍ତା କାରୁକଳା ଫୁଟାଇବାରେ ଲଗିଲେ ।

କିନ୍ତୁ ରାଜାଙ୍କ କାଳ ସହିଲା ନାହିଁ । ମନ୍ଦିର କାମ ଅଳ୍ପ କିଛି ଦୂର ଅଗେଇଛି କି ନାହିଁ, ସେ ଅଖି ବୁଜିଦେଲେ । ଦୀର୍ଘ ୪୬ ବର୍ଷ କାଳ ରାଜୁତି କରି ଏବଂ ଦେଶରେ ସୁଶାସନ ପ୍ରତିଷ୍ଠା ଓ ନାନା କୀର୍ତ୍ତି ସ୍ଥାପନ କରି ମୃତ୍ୟୁ ସମୟକୁ ସେ ଅବଶ୍ୟ ଖୁବ୍ ବୁଢ଼ା ହୋଇଯାଇଥିଲେ । ତେଣୁ ପାଚିଲା ଗଛପରି ମୁହୂର୍ତ୍ତକେ ଗଛରୁ ଖସିପଡ଼ିଲେ । ତାଙ୍କୁ ହରାଇ ସାରା କଳିଙ୍ଗରେ ଶୋକର ଗୋଟାଏ ବନ୍ୟା ବହିଗଲା ।

ଯଯାତି ଆଜ ନାହାନ୍ତି ସତ୍ୟ; କିନ୍ତୁ ତାଙ୍କ ପ୍ରତିଷ୍ଠିତ ଅକ୍ଷୟ କୀର୍ତ୍ତିଗୁଡ଼ିକ ଏ ପର୍ଯ୍ୟନ୍ତ ଠିଆହୋଇ ରହି ଆମକୁ ତାଙ୍କ କଥା ମନେପକାଇ ଦେଉଛି । କାଳ ଏ ପର୍ଯ୍ୟନ୍ତ ସେ କୀର୍ତ୍ତିଗୁଡ଼ିକ ଉପରେ କୌଣସି ଅଞ୍ଚ ଆଣି ପାରିନାହିଁ । ସାବତମାଆମାନଙ୍କ ବାଦଚ୍ଛଦ୍ରରେ ଯବେ ସେ କୋଶଳ ଜଅସରୁ ଜୀବନ ଘେନି ପଳାଇ ଆସିଥିଲେ; ଆଜ କିନ୍ତୁ ସେ ଆମ ଜାତିର ଅକ୍ଷୟ ଅମର ଦେବତା ହୋଇ ରହିଛନ୍ତି ।



ବ୍ରହ୍ମପୁର ନାଜ ଷ୍ଟୋର୍ସ ପ୍ରେସ୍‌ରେ
ଶ୍ରୀ ଘନଶ୍ୟାମ ଦାଶଙ୍କ ଦ୍ୱାରା ମୁଦ୍ରିତ ।

# —ଅମର ଚରିତମାଳା—

ଶ୍ରୀ ଗୋଦାବରୀଶ ମହାପାତ୍ର, ଶ୍ରୀ କୃଷ୍ଣଚନ୍ଦ୍ର କର, ଅଧ୍ୟାପକ ଶ୍ରୀଧର ଦାସ, ଶ୍ରୀ ଭଗବାନ ପଣ୍ଡା, ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ, ପଣ୍ଡିତ ନରସିଂହ ମହାପାତ୍ର, ଶ୍ରୀ ପରଶୁରାମ ହରିଚନ୍ଦନ, ପଣ୍ଡିତ ସଦାଶିବ ରଥ ଶର୍ମା, ଅଧ୍ୟାପକ ଗୌରୀକୁମାର ବ୍ରହ୍ମା, ଅଧ୍ୟାପକ ସର୍ବେଶ୍ୱର ଦାସ, ଶ୍ରୀ କାଳିଆ ପାଣିଗ୍ରାହୀ ପ୍ରଭୃତିଙ୍କ ଲିଖିତ । ପ୍ରତ୍ୟେକଟି ସଚିତ୍ର ।

| | |
|---|---|
| ୧ । ଖାରବେଳ | ୨ । କପିଳେନ୍ଦ୍ର ଦେବ |
| ୩ । ଫକୀରମୋହନ | ୪ । ପ୍ରତାପରୁଦ୍ର ଦେବ |
| ୫ । ଶ୍ରୀରାମଚନ୍ଦ୍ର ଭଞ୍ଜ | ୬ । ଭକ୍ତକବି ମଧୁସୂଦନ |
| ୭ । ସୁଢ଼ଳ ଦେବ | ୮ । ମୁକୁନ୍ଦ ଦେବ |
| ୯ । ପୁରୁଷୋତ୍ତମ ଦେବ | ୧୦ । ରାଧାନାଥ |
| ୧୧ । କୁଳବୃଦ୍ଧ ମଧୁସୂଦନ | ୧୨ । ଉତ୍କଳମଣି ଗୋପବନ୍ଧୁ |
| ୧୩ । ଚନ୍ଦ୍ରଶେଖର | ୧୪ । ଶୂଦ୍ରମୁନି ସାରଳା |
| ୧୫ । ଗୌରୀଶଙ୍କର | ୧୬ । ଗଙ୍ଗାଧର ମେହେର |
| ୧୭ । କବିସୂର୍ଯ୍ୟ | ୧୮ । ସାଧୁ ସୁନ୍ଦର ଦାସ |
| ୧୯ । ନନ୍ଦକିଶୋର ବଳ | ୨୦ । ଯଯାତି କେଶରୀ |
| ୨୧ । ଜୟଦେବ | ୨୨ । ଚୋଡ଼ଗଙ୍ଗ ଦେବ |
| ୨୩ । ଅନଙ୍ଗଭୀମ ଦେବ | ୨୪ । ବିଶ୍ୱନାଥ କର |
| ୨୫ । ଗୋବିନ୍ଦ ରଥ | ୨୬ । ଜଗନ୍ନାଥ ଦାସ |
| ୨୭ । ପଣ୍ଡିତ କୃପାସିନ୍ଧୁ | ୨୮ । କୃତ୍ତିବାସ ପାଟସାଣୀ |
| ୨୯ । ଜୟୀ ରାଜଗୁରୁ | ୩୦ । ଋଷି ଖୁଣ୍ଟିଆ |
| ୩୧ । ଉପେନ୍ଦ୍ର ଭଞ୍ଜ | ୩୨ । କୁନ୍ତଳାକୁମାରୀ ସାବତ |
| ୩୩ । ନୀଳମଣି ବିଦ୍ୟାରତ୍ନ | ୩୪ । ଦେଶସେବକ ନରସିଂହ ଦାସ |

ପ୍ରତ୍ୟେକର ମୂଲ୍ୟ ଛଅ ଅଣା

# ଆମ ପଡ଼ିଶା ଅଡ଼ିଶା ସିରିଜ୍

ଲେଖକ—ପଣ୍ଡିତ ଗୋଦାବରୀଶ ମିଶ୍ର

୧। ଅଷ୍ଟ୍ରେଲିଆ
୨। ଦକ୍ଷିଣ ଆଫ୍ରିକା
୩। ପଶ୍ଚିମ ଗୋଲାର୍ଦ୍ଧ
୪। ମଧ୍ୟ ଆମେରିକା
୫। ଗ୍ରେଟ୍ ବ୍ରିଟେନ୍

ପ୍ରତ୍ୟେକରେ ସେହି ଦେଶମାନଙ୍କର ଭୌଗୋଳିକ, ସାମାଜିକ ଓ ରାଜନୈତିକ ବିବରଣୀ ସରଳ ଭାଷାରେ ଦିଆଯାଇଛି।

"ଗ୍ରେଟ୍ ବ୍ରିଟେନ୍"—ସମ୍ପୂର୍ଣ୍ଣ ନୂଆ ବହି।

ପ୍ରତ୍ୟେକ ବହିର ମୂଲ୍ୟ ଛଅ ଅଣା

---

ଅଧ୍ୟାପକ ଗୋକୁଳାନନ୍ଦ ମହାପାତ୍ରଙ୍କ ପ୍ରଣୀତ—

# ଅଜାଙ୍କ ମଜାକଥା

( ପିଲାଙ୍କ ପାଇଁ ଶିଳ୍ପ-ବିଜ୍ଞାନମୂଳକ ଗଳ୍ପ )

(୧) କାଚ କଥା
(୨) କାଗଜ କଥା
(୩) ଚିନି କଥା
(୪) ସାର କଥା
(୫) କର୍ସିନ କଥା

ପ୍ରତିଖଣ୍ଡ ଆଠ ଅଣା

ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କ ପ୍ରଣୀତ

# ଗ୍ରହ ଉପଗ୍ରହ ସିରିଜ୍

ଶିଶୁମାନଙ୍କ ପାଇଁ ବିଜ୍ଞାନ ରାଜ୍ୟର
ନୂତନ ଆଲୋକ

୧ । ସୂର୍ଯ୍ୟ  ୩ । ଚନ୍ଦ୍ର
୨ । ପୃଥିବୀ  ୪ । ମଙ୍ଗଳ
୫ । ଆକାଶ ମଣ୍ଡଳ

ପ୍ରତ୍ୟେକଟି ସଚିତ୍ର । ପ୍ରତ୍ୟେକର ମୂଲ୍ୟ ଟ ୦ ।/

---

ସ୍ୱର୍ଗତ ଶିଶୁ ସାହିତ୍ୟିକ ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ପ୍ରଣୀତ

# ହିତ କଥା ସିରିଜ୍

ସଂସ୍କୃତ 'ହିତୋପଦେଶ କଥା'ର ଅବଲମ୍ବନରେ ଲିଖିତ ।

୧ । ପ୍ରଥମ ଭାଗ—ମିତ୍ରଲାଭ  ୩ । ତୃତୀୟ ଭାଗ—ବିଗ୍ରହ
୨ । ଦ୍ୱିତୀୟ ଭାଗ—ସୁହୃଦ୍‌ଭେଦ ୪ । ଚତୁର୍ଥ ଭାଗ—ସନ୍ଧି

ପ୍ରତ୍ୟେକଟି ସଚିତ୍ର । ପ୍ରତ୍ୟେକର ମୂଲ୍ୟ ଟ ୦ ୵୯/

ନୂତନ ସଂସ୍କରଣ ପ୍ରକାଶ ପାଉଛି ।

ଓଡ଼ିଶାରେ ପ୍ରସିଦ୍ଧ ଶିଶୁ ସାହିତ୍ୟକମାନଙ୍କ ଦ୍ୱାରା ଲିଖିତ

# ଅମର ଚରିତମାଳା

## ପ୍ରତ୍ୟେକର ମୂଲ୍ୟ ନଅ ଅଣା

୧ । ଜୟଦେବ
୨ । ଜଗନ୍ନାଥ ଦାସ
୩ । ସାଧୁସୁନ୍ଦର ଦାସ
୪ । ସାରଳା ଦାସ
୫ । ଉପେନ୍ଦ୍ର ଭଞ୍ଜ
୬ । କବିସୂର୍ଯ୍ୟ
୭ । ରାଧାନାଥ ରାୟ
୮ । ଗଙ୍ଗାଧର ମେହେର
୯ । ନନ୍ଦକିଶୋର ବଳ
୧୦ । ଫକୀରମୋହନ
୧୧ । ଚନ୍ଦ୍ରଶେଖର
୧୨ । ବିଶ୍ୱନାଥ କର
୧୩ । କୁନ୍ତଳା କୁମାରୀ
୧୪ । ଗୋବିନ୍ଦ ରଥ
୧୫ । ଜୟୀ ରାଜଗୁରୁ
୧୬ । ବୃକ୍ଷ ନ୍ଦିଆ
୧୭ । କୃତ୍ତିବାସ ପଟ୍ଟସାଣୀ
୧୮ । ଉତ୍କଳମଣି ଗୋପବନ୍ଧୁ
୧୯ । କୁଳବୃଦ୍ଧ ମଧୁସୂଦନ
୨୦ । କର୍ମଯୋଗୀ ଗୌରୀଶଙ୍କର
୨୧ । ପଣ୍ଡିତ କୃପାସିନ୍ଧୁ
୨୨ । ନରସିଂହ ଦାସ
୨୩ । ନୀଳମଣି ବିଦ୍ୟାରତ୍ନ
୨୪ । ଖାରବେଳ
୨୫ । ଯଯାତିକେଶରୀ
୨୬ । ଚୋଡ଼ଗଙ୍ଗ ଦେବ
୨୭ । ଅନଙ୍ଗଭୀମ ଦେବ
୨୮ । କପିଳେନ୍ଦ୍ର ଦେବ
୨୯ । ପୁରୁଷୋତ୍ତମ ଦେବ
୩୦ । ପ୍ରତାପରୁଦ୍ର ଦେବ
୩୧ । ମୁକୁନ୍ଦଦେବ
୩୨ । ଶ୍ରୀ ରାମଚନ୍ଦ୍ର ଭଞ୍ଜ
୩୩ । ଧୂଡ଼ଳ ଦେବ
୩୪ । ଭକ୍ତକବି ମଧୁସୂଦନ
୩୫ । ଗୋପାଳ ପ୍ରହରାଜ
୩୬ । ଶଶୀଭୂଷଣ ରାୟ

ପ୍ରକାଶକ—

ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ, କଟକ